

ଡ. କଇଲାଶ ପଟ୍ଟନାୟକଙ୍କ ପୃଷ୍ଠବନ୍ଧ ସହିତ

# ଅନନ୍ୟ ସେହି ପୁରୁଷ

କୁମାର ମହାନ୍ତି

ସଂପାଦନା

ମନୁ ଦାଶ





ଧଉଳି ବୁକ୍ସ
୮୧୮/୨୫୦୨, ଗୋବିନ୍ଦେଶ୍ୱର ରୋଡ, ଓଲ୍ଡ ଟାଉନ
ଭୁବନେଶ୍ୱର, ଓଡ଼ିଶା ୭୫୧୦୦୨

ଧନ୍ୟ ସେହୁ ପୁରୀ

ପ୍ରଥମ ମୁଦ୍ରଣ ୨୦୨୦


ପ୍ରଚ୍ଛଦ: ପ୍ରଫୁଲ୍ଲ ମହାନ୍ତି

ଅକ୍ଷର ସଂଯୋଜନା: ପ୍ରଥମ ବହି, କଟକ, ଓଡ଼ିଶା

ଧଉଳି ବୁକ୍ସ ତରଫରୁ ମନୁ ଦାଶଙ୍କ ଦ୍ୱାରା ପ୍ରକାଶିତ
ମୁଦ୍ରଣ: ଥମ୍ସନ୍ ପ୍ରେସ୍ (ଇଣ୍ଡିଆ) ଲିମିଟେଡ୍, ନୂଆ ଦିଲ୍ଲୀ

ଆଇ.ଏସ୍.ବି.ଏନ୍.: ୯୭୮-୯୩-୮୯୩୮୨-୩୭-୨

ମୂଲ୍ୟ: ₹ ୨୯୫/-

Dhauli Books
(an imprint of Dhauli Review Trust)
Plot 818/2502, Gobindeswar Road, Old Town
Bhubaneswar 751002, Odisha, India
www.dhaulibooks.com
email: contactdhaulibooks@gmail.com
manmohan_dash@yahoo.com

Dhanya Sehu Puri

First edition on 2020


Cover: Prafulla Mohanty

Typeset by Pratham Bahi, Cuttack, Odisha

Published by Manu Dash for Dhauli Books
Printed and bound by Thomson Press (India) Ltd., New Delhi

ISBN 978-93-89382-37-2

Price : ₹ 295/-

# ବହିରେ ଅଛି

# କିଛି କହିବାର ଅଛି

୧୯୭୬ ମସିହା ବେଳକୁ ଓଡ଼ିଶାରେ ଯେଉଁ ହାତଗଣତି ମାସିକ ସାହିତ୍ୟ ପତ୍ରିକା ବାହାରୁଥିଲା, ତା ଭିତରେ 'ନବରବି' ଥିଲା ଲୋକପ୍ରିୟ ଓ ଅଧିକ ପ୍ରସାରିତ। ସେତେବେଳେ ଏହାର ପ୍ରସାରଣ ସଂଖ୍ୟା ତିନି ହଜାର ଥିଲା ବୋଲି ଶୁଣାଯାଏ। କଲିକତାରେ ଛପା ହେଉଥିବା ଏଇ ପତ୍ରିକାର ସଂପାଦନା ଥିଲା ବେଶ୍ ରୁଚିପୂର୍ଣ୍ଣ।

୧୯୭୬ ଜୁଲାଇ ବେଳକୁ ଇନ୍ଦିରା ଗାନ୍ଧୀ ଭାରତର ସର୍ବମୟୀ କର୍ତ୍ତ୍ରୀ ଏବଂ ଜରୁରୀକାଳୀନ ପରିସ୍ଥିତି ବଳବତ୍ତର ଥାଏ। ମାଛି ତଳେ ପଡ଼ିଲେ ନ'ଖଣ୍ଡ ଅବସ୍ଥା। ସବୁଆଡ଼େ ଗୋଟେ ଅଦୃଶ୍ୟ କୋକୁଆ ଭୟ। ଶୋଭାଯାତ୍ରା, ମାଇକ୍‌ମାନଙ୍କର ଗଳାଫଟା ଭାଷଣ ଅଥବା ବିରୋଧ ପ୍ରଦର୍ଶନର ନାଁ ଗନ୍ଧ ନଥାଏ। ସବୁ ଆଡ଼େ ଯିମିତି ନସ୍ତବ୍ଧତା।

୧୯୭୬ ଜୁଲାଇ ବେଳକୁ 'ଅନାମ କାବ୍ୟ ଆନ୍ଦୋଳନ' ବେଶ୍ ମୁଖର। କବିତା ପାଠୋତ୍ସବମାନଙ୍କରେ ଓ ପତ୍ର ପତ୍ରିକାମାନଙ୍କରେ ଛୋଟିଆ 'ବିନ୍ଦୁ' ଶୀର୍ଷକ ଥିବା କବିତାର ହାଉଯାଉ ଦେଖିବାକୁ ମିଳିଥାଏ। ଯେଉଁ କବିତା ଆସରରେ କୁମାର ମହାନ୍ତି କବିତା ପଢ଼ନ୍ତି, ଶ୍ରୋତାମାନଙ୍କୁ ସ୍ତବ୍ଧ କରିଦିଅନ୍ତି। ଖ୍ୟାତିର ଶିଖରରେ ଥିବାବେଳେ 'ନବରବି' ପତ୍ରିକା ପାଇଁ ସେ ଏକ ଧାରାବାହିକ ଆଲୋଚନା ଲେଖିବା ଆରମ୍ଭ କଲେ।

'ଧନ୍ୟ ସେହୁ ପୁରୀ' ଲେଖିବା ବେଳେ ବିଶିଷ୍ଟ ଆଲୋଚକ, ପ୍ରାବନ୍ଧିକ ଓ ଚିନ୍ତକ ଚିତ୍ତରଂଜନ ଦାସ ମଧ୍ୟ 'ଜାତିରେ ମୁଁ ଯବନ' ଧାରାବାହିକ ଭାବେ ଲେଖୁଥିଲେ ଯାହା ପାଠକ ଓ ସମାଲୋଚକଙ୍କ ସଶ୍ରଦ୍ଧ ଦୃଷ୍ଟି ଆକର୍ଷିତ କରିଥିଲା।

'ଧନ୍ୟ ସେହୁ ପୁରୀ'ର ପ୍ରଥମ ସଂଖ୍ୟାରେ ସଂପାଦକ ଯାହା ଲେଖିଥିଲେ, ତାହା ଏଠି ଆମେ ସୁଧୀ ପାଠକଙ୍କ ଗୋଚରାର୍ଥେ ଉପସ୍ଥାପନ କରୁଛୁ:

> 'ଧନ୍ୟ ସେହୁ ପୁରୀ' – କିମ୍ବଦନ୍ତୀ, ଲୋକକଥା, ଓଡ଼ିଆ ସଂସ୍କୃତି ଓ ଜଗନ୍ନାଥଙ୍କ ତତ୍ତ୍ୱ ଉପରେ ଆଧାରିତ ତଥା ବର୍ତ୍ତମାନ ଜୀବନର ପ୍ରେକ୍ଷାପଟ୍ଟରେ ରଚିତ ଏକ ଭିନ୍ନ ସ୍ୱାଦର ଉପନ୍ୟାସ। ଏହାକୁ ଏକ ଭ୍ରମଣକାହାଣୀ, ରମ୍ୟରଚନା ବା ପ୍ରବନ୍ଧ ବି କୁହାଯାଇ ପାରେ। ଆମେ 'ନବରବି'ର ପୃଷ୍ଠାରେ ଦେଶ, ବିଦେଶର ବହୁ ଭ୍ରମଣ କାହାଣୀ ପ୍ରକାଶିତ କରିଛୁ କିନ୍ତୁ ଏ ଅଭିନବ ପ୍ରଚେଷ୍ଟା ଓଡ଼ିଆ ସଂସ୍କୃତି ତଥା ଓଡ଼ିଆ ଜନଜୀବନର ତାତ୍ତ୍ୱିକ ତଥା ଦାର୍ଶନିକ ଦୃଷ୍ଟିଭଙ୍ଗୀକୁ ସର୍ବସାଧାରଣଙ୍କ ବୋଧଗମ୍ୟ କରେଇବାର ଉଦ୍ଦେଶ୍ୟରେ ରଚିତ। ଅଧୁନାତନ ଓଡ଼ିଆ କବିତାରେ ନବଦିଗନ୍ତର ଉନ୍ମୋଚକ କବି କୁମାର ମହାନ୍ତି ଏହାର ସ୍ରଷ୍ଟା। ଆମେ ଏହି ରଚନାର ସମାଲୋଚନାକୁ ସ୍ୱାଗତ କରୁଛୁ। କିମ୍ବଦନ୍ତୀ ଓ ଲୋକକଥା ତଥା ତତ୍ତ୍ୱରେ ଯଦି କୌଣସି ଭ୍ରମ ରହୁଥାଏ – ତା'ହେଲେ ପାଠକମାନେ ଆମକୁ ଜଣେଇ ଉପକୃତ କରେଇବେ ବୋଲି ଆଶା।'

କୁମାର ମହାନ୍ତି ଯେ 'ନବଦିଗନ୍ତର ଉନ୍ମୋଚକ' ଥିଲେ ଏକଥା କେବଳ 'ନବରବି'ର ସଂପାଦକ କହୁ ନଥିଲେ 'ଆସନ୍ତାକାଲି', 'ମାନସ' ଆଦି ପତ୍ରିକାରର ବୁଦ୍ଧିଦୀପ୍ତ ସଂପାଦକ ଏକଥା ବି ହୃଦୟଙ୍ଗମ କରିଥିଲେ।

'ଧନ୍ୟ ସେହୁ ପୁରୀ'ର ମାତ୍ର ପାଞ୍ଚଟି ସଂଖ୍ୟା 'ନବରବି'ରେ ସ୍ଥାନିତ ହୋଇଥିଲା ନିମ୍ନଲିଖିତ ମତେ:

ପ୍ରଥମ ସଂଖ୍ୟା – ଜୁଲାଇ ୧୯୭୬ (ସପ୍ତମ ବର୍ଷ, ପ୍ରଥମ ସଂଖ୍ୟା)
ଦ୍ୱିତୀୟ ସଂଖ୍ୟା – ଅଗଷ୍ଟ ୧୯୭୬ (ସପ୍ତମ ବର୍ଷ, ଦ୍ୱିତୀୟ ସଂଖ୍ୟା)
ତୃତୀୟ ସଂଖ୍ୟା – ସେପ୍ଟେମ୍ବର ୧୯୭୬ (ସପ୍ତମ ବର୍ଷ, ପୂଜା ସଂଖ୍ୟା)
ଚତୁର୍ଥ ସଂଖ୍ୟା – ନଭେମ୍ବର ୧୯୭୬ (ସପ୍ତମ ବର୍ଷ, ପଞ୍ଚମ ସଂଖ୍ୟା)
ପଞ୍ଚମ ସଂଖ୍ୟା – ଫେବୃଆରୀ ଓ ମାର୍ଚ୍ଚ ୧୯୭୭ (ସପ୍ତମ ବର୍ଷ, ନବମ ସଂଖ୍ୟା)

ଏହାପରେ 'ନବରବି' ପ୍ରକାଶନ ବନ୍ଦ ହୋଇଗଲା। ପରବର୍ତ୍ତୀ ସଂଖ୍ୟାଗୁଡ଼ିକ 'ଅନାମ–୧୪, ୧୫ ଓ ୧୬'ରେ ପ୍ରକାଶ ପାଇଛି। କୁମାର ମହାନ୍ତି ତାଙ୍କ ମୃତ୍ୟୁ ପର୍ଯ୍ୟନ୍ତ ଅର୍ଥାତ୍ ୨୦ ବର୍ଷ ଭିତରେ ଆଉ କିଛି ସଂଖ୍ୟା ଲେଖିଥିଲେ ବି ଛପାଇବାକୁ ଦେଇ ନଥିଲେ।

'ନବରବି' ଓ 'ଅନାମ'ରେ ଏଇ ପ୍ରକାଶିତ ସଂଖ୍ୟାଗୁଡ଼ିକ ମୋର ଅଧ୍ୟାପକ ତଥା

ପ୍ରତିଷ୍ଠିତ କବି ଡଃ ବଂଶୀଧର ଷଡ଼ଙ୍ଗୀ ଏକାଠି କରି ଏହାର ପ୍ରକାଶନ ପାଇଁ ଉତ୍ସାହର ସହ ମୋତେ ଦେଇଥିଲେ। ଡଃ ଷଡ଼ଙ୍ଗୀ କେବଳ ମୋର ଅଧ୍ୟାପକ ନଥିଲେ, ସେ କୁମାର ମହାନ୍ତିଙ୍କର ସହପାଠୀ ଥିଲେ। 'ଅନାମ କାବ୍ୟ ଆନ୍ଦୋଳନ'ର କେତେକ ମୌଳିକ ନୀତି ପ୍ରତି ତାଙ୍କର ସମର୍ଥନ ନଥିଲା, ମାତ୍ର ଏହା ତାଙ୍କର ବନ୍ଧୁତାକୁ କେବେ ବି କ୍ଷୁର୍ଣ୍ଣ କରି ନଥିଲା। ସହୃଦୟ ସମାଲୋଚକ ଥିଲେ ସେ। ଏଇ ଅସଂପୂର୍ଣ୍ଣ 'ଧନ୍ୟ ସେହୁ ପୁରୀ' ମଧ୍ୟ ଲୋକଲୋଚନକୁ ଆସିପାରି ନଥାନ୍ତା ଯଦି କବି ଓ ଅଧ୍ୟାପକ ଡଃ ଷଡ଼ଙ୍ଗୀ 'ନବରବି' ଓ 'ଅନାମ'ର ସଂପୃକ୍ତ ସଂଖ୍ୟାଗୁଡ଼ିକ ଦେଇ ନଥା'ନ୍ତେ। ମୁଁ ବ୍ୟକ୍ତିଗତ ଭାବେ ସାର୍‌ଙ୍କ ପାଖରେ ଗଭୀର ଋଣୀ।

ମାତ୍ର ଏଠାରେ ଆଉ ଏକ କଥା ପାଠକ ଓ ଗବେଷକ ତଥା 'ଅନାମ କାବ୍ୟ ଆନ୍ଦୋଳନ'ର ଶୁଭେଚ୍ଛୁମାନଙ୍କ ଅବଗତି ନିମନ୍ତେ ଜଣାଇବା ଆବଶ୍ୟକ ମନେ କରୁଛି। ୧୯୯୬ ମସିହାରେ କୁମାର ମହାନ୍ତିଙ୍କ ଅକାଳ ବିୟୋଗ ପରେ ସଞ୍ଜୟ ଶତପଥୀ ନାମକ ଜଣେ ଭଦ୍ରବ୍ୟକ୍ତି କୁମାର ଭାଇଙ୍କ ଘରକୁ ଯାଇ ଚଞ୍ଚକତା ପୂର୍ବକ ତାଙ୍କ ବ୍ୟକ୍ତିଗତ ଡାଏରୀ, କିଛି ଅପ୍ରକାଶିତ କବିତା ଓ 'ଧନ୍ୟ ସେହୁ ପୁରୀ'ର କିଛି ଭାଗ 'ଅନାମ କାବ୍ୟ ଆନ୍ଦୋଳନ'ର ପ୍ରଚାର ଓ ପ୍ରସାର କରିବେ ବୋଲି ତାଙ୍କ ପରିବାରକୁ ପ୍ରତିଶ୍ରୁତି ଦେଇ ନେଇ ଯାଇଛନ୍ତି। ମାତ୍ର ୟା'ଭିତରେ ଦୀର୍ଘ ୨୫ ବର୍ଷ ବିତି ଯାଇଥିଲେ ମଧ୍ୟ ସଞ୍ଜୟ ଶତପଥୀ ସେ ସବୁ ଲେଖାକୁ ପ୍ରକାଶିତ କରି ନାହାନ୍ତି। ଯେତେବେଳେ କୁମାର ମହାନ୍ତି ଓ 'ଅନାମ କାବ୍ୟ ଆନ୍ଦୋଳନ' ସଂପର୍କରେ ବିଭିନ୍ନ ପୁସ୍ତକ ପ୍ରକାଶନ ପାଇଁ ଆମେ ଯୋଜନା କରି ଶ୍ରୀ ଶତପଥୀଙ୍କୁ ସଂପର୍କ ସ୍ଥାପନ କଲୁ, ସେ କୁମାର ଭାଇଙ୍କ ଘରୁ ଆଣିଥିବା ସମସ୍ତ କାଗଜପତ୍ର କଥା ସ୍ୱୀକାର କଲେ, ହେଲେ ପରବର୍ତ୍ତୀ ସମୟରେ ଆଉ ଧରାଛୁଆଁ ଦେଲେ ନାହିଁ।

ଏକଥା ଏଠାରେ ସୂଚାଇ ଦେବାର କାରଣ ହେଉଛି ଯେ ଶ୍ରୀ ଶତପଥୀ ଭବିଷ୍ୟତରେ ଏସବୁକୁ ନିଜ ପାଇଁ ବ୍ୟବହାର ନକରି କୁମାର ମହାନ୍ତିଙ୍କ ନାମରେ ସେଇ ଲେଖାଗୁଡ଼ିକ ପ୍ରକାଶ କଲେ ସୁଧୀ ପାଠକ ଓ ଗବେଷକମାନେ ନିଶ୍ଚୟ ଉପକୃତ ହେବେ।

'ଧନ୍ୟ ସେହୁ ପୁରୀ' ପାଠ କରି ଯଦି ଜଣେ ଓଡ଼ିଆ ଭାବରେ ଆପଣ କିଛି ଆନନ୍ଦ ଅନୁଭବ କରନ୍ତି, ତା ହେଲେ ଆମର ଶ୍ରମ ସାର୍ଥକ ହେଇଛି ବୋଲି ମନେ କରିବୁ।

କିମଧିକମ୍!

ମନୁ ଦାଶ

ଧନ୍ୟ ସେହୁ ପୁରୀ

ଧନ୍ୟ ସେହୁ ନାରୀ

ଆଗେ କରନ୍ତି ଦର୍ଶନ. . .

କବି ଦୀନକୃଷ୍ଣ ପୁରୀ ଏବଂ ପୁରୀର ଲୋକଙ୍କୁ ଧନ୍ୟ ମଣିଛନ୍ତି ତାଙ୍କର ଏକ ଭଜନରେ। ହବନି କେମିତି ? ଜଗତର ନାଥ ସିଂହଦ୍ୱାର ଡେଇଁଲେ ହିଁ ନଗର କୃତାର୍ଥ, ନଗର ବାସିନ୍ଦା କୃତାର୍ଥ। ଶଙ୍ଖାକୃତି ଏ ସହର ପଦସେବା କରୁଥିବା ସାଗର ବି; ସେ ମୁହୂର୍ତ୍ତରେ ବିହ୍ୱଳ ହୋଇଯାଏ। ପବନରେ ତାର ଗୁଞ୍ଜରଣ ଭାସି ଆସେ – କୀର୍ତ୍ତନିଆଙ୍କ ଝାଞ୍ଜ ଆଉ ଖୋଳ ଭିତରକୁ। ତାକୁ ଦେଖୁଥିବା ଲୋକ ବିଭୋଳ – ତା' କୀର୍ତ୍ତନ ଶୁଣୁଥିବା ଭକ୍ତ ବିଭୋଳ – ତାକୁ କାନ୍ଧେଇଥିବା ସେବକ ବି ବିଭୋଳ। ବଡ଼ ଦାଣ୍ଡର ଧୂଳି ବି ପବନ ସହ ନାଚି ନାଚି ଉଠିପଡ଼େ ତା ପାଦ ଟିକେ ଛୁଇଁବାକୁ . . . ଅଃ ମଣି ବିମାନ ଆଉ ପାଲିଙ୍କି କାନ୍ଧେଇ ନେଉଥିବା ସେବକଙ୍କ ପାହୁଲକୁ ଦେଖି ନାହାନ୍ତି – ପହଣ୍ଡି ବେଳେ କାଳିଆକୁ ଝିଙ୍କୁଥିବା - ନଚଉଥିବା ଦଉଡ଼ାଙ୍କୁ ଦେଖି ନାହାନ୍ତି ? ରଥ ଉପରେ ଘଣ୍ଟ ବାଡ଼ଉଥିବା ଘଣ୍ଟୁଆଙ୍କ ଦୋହଲ ? ଡାହୁକର ବେତ ହଲାର ଛନ୍ଦ ପତନ . . . ?

– ହଁ . . . ଆଜ୍ଞା ! ପୁରୀଆଙ୍କ କଥା କାହିଁକି ପଡ଼ିଛି ? କଥାରେ ପରା ଅଛି – କାଳିଆ ତାଙ୍କୁ ଶଙ୍ଖରେ ପୂରେଇ ଚକ୍ର ଉହାଡ଼ କରିଛି। ବ୍ରହ୍ମଗିରୀରେ – କାକଟପୁର, ସାକ୍ଷୀଗୋପାଳରେ ଝଡ଼ ହେବ, ତୋଫାନ – ବଢ଼ି ଆସିବ – ଆଳି, କନିକା ପାରାଦ୍ୱୀପଠି ସମୁଦ୍ର ଜୁଆର ମାଡ଼ିବ – ହେଲେ ପୁରୀ ? ଖରା ନାହିଁ, କି ଶୀତ ନାହିଁ – ପ୍ରକୃତି ବି ଏ ଜାଗାଟା ପ୍ରତି ମାୟା ରଖିଛି –

ପୁରୀ ଅଭିମୁଖୀ ବସ୍‌ଟିର ଗୋଟିଏ ଦୁଇଜଣିଆ ସିଟ୍‌ରେ ଭାବ ବିହ୍ୱଳ ବାବାଜୀ ଜଣେ ଓ ଅଭିଜ୍ଞତାର ଚୋଟରେ ଚମ ଧୁଡୁଧୁଡୁ ହୋଇଥିବା ଅନ୍ୟ ଜଣେ ବୃଦ୍ଧ ଯାତ୍ରୀ

– ନିଜ ନିଜ କଥାରେ ବ୍ୟସ୍ତ । ଜଗନ୍ନାଥ ସଡ଼କର ଦୁଇକଡ଼େ ଲମ୍ବେଇ ପଡ଼ିଥିବା ଧାନ କ୍ଷେତ ଉପର ଦେଇ ବୋହି ଆସୁଥିବା ପୁଷ ମାସିଆ କାଲୁଆ ପବନ – ବସ୍‌ର ସବୁ କାଚ ଝରକା ମୁଦି ଦବା ପାଇଁ ବାଧ କରୁଥାଏ । ମୁଁ ନିର୍ଲିପ୍ତ ଭାବେ ଚାହିଁଥାଏ ସେଇ କାକର ଭିଜା କ୍ଷେତମାନଙ୍କୁ । ଜୀବନର ଏକ ସନ୍ଧିକ୍ଷଣରେ – ପାର୍ଥିବ ଜୀବନର ଏକ ବିଶେଷ ବିଫଳତା ପରେ – ମୁଁ ପୁରୀ ଯାଇଛି । ଝରକା ଅଳ୍ପ ଖୋଲା ରଖି ସେ ଥଣ୍ଡା ପବନର ଧକ୍‌କା ମୁଁ ଆନନ୍ଦର ସହ ଆତ୍ମସ୍ଥ କରୁଥାଏ । ଆଗ ସିଟ୍‌ମାନଙ୍କରେ କେଇଜଣ ହିପ୍‌ପୀ ସଦୃଶ ଓଡ଼ିଆ ଯୁବକ ଯୁବତୀ ଦଳ । ସିଗାରେଟ୍‌ର ଧୂମ କୁଣ୍ଡଳୀ ତଥା ଯାଙ୍କି ଉଚ୍ଚାରଣରେ ମସ୍‌ଗୁଲ ସେଇ ଦଳଟି ଘୂରି ବସି କେତେବେଳୁ ସେ ବୃଦ୍ଧ ଓ ବାବାଜୀଙ୍କ କଥୋପକଥନ ଶୁଣୁଥିଲେ । ଜଣେ ବାବାଜୀଙ୍କୁ ଚାହିଁ ହାସ୍ୟୋଦ୍ଦିପକ କଣ୍ଠରେ ପ୍ରଶ୍ନ କଲା :

– ତା'ହେଲେ କବି ଦୀନକୃଷ୍ଣ ପୁରୀର ସବୁ ଲୋକଙ୍କୁ କ'ଣ ନାରୀ ବୋଲି ଭାବିଥିଲେ ?

– ଆବେ ହିଞ୍ଜଡ଼ାଙ୍କ ସହର । ଗୁଡ଼ାଏ ଭାଙ୍ଗୁଆ ଗୋଦରାଙ୍କ ହାତରେ କେବେ କିଛି ହେଲାଣି ? ଅନ୍ୟ ଜଣେ ବନ୍ଧୁ ସେଇ ଦଳରୁ ପ୍ରଥମ ପ୍ରଶ୍ନକର୍ତ୍ତାଙ୍କୁ ସମର୍ଥନ କଲେ । ତା'ପରେ ହୋ ହୋ ଏବଂ ଖିଲି ଖିଲି ହସ । କିନ୍ତୁ ରୋଲ୍‌ଡ ଗୋଲ୍‌ଡ ଫ୍ରେମ୍‌ର ବଡ଼ ଗୋଲ ଚଷମା ପିନ୍ଧା ସିରିଅସ୍ ଦେଖା ଯାଉଥିବା ଝିଅଟିଏ – ଏମାନଙ୍କ ହାସ୍ୟରୋଳକୁ ଚପେଇ ବାବାଜୀକୁ କହିଲା :

– ନାଇଁ ଆଜ୍ଞା ! ଆପଣ କୁହନ୍ତୁ –

ବାବାଜୀ ମହାଶୟ ଅଳ୍ପ ଟିକେ ହସିଲେ ।

– ଆରେ ମା' ! ପୁରୁଷୋତ୍ତମ ପାଖରେ ଆଉ କେହି ପୁରୁଷ ରହିପାରେ ? ଚୈତନ୍ୟ ଯୋଉଦିନ ପୁରୀକୁ ପ୍ରଥମେ ଆସିଲେ – ସେଦିନ ପୁରୀରେ ରଥଯାତ୍ରା ହେଉଥିଲା କଥିତ ଅଛି । ରଥ ଜଗନ୍ନାଥ ବଲ୍ଲଭ ମଠ ନିକଟରେ ପହଞ୍ଚି ଯାଇଥିଲା । ଜଗନ୍ନାଥଙ୍କୁ ଦେଖି ଚୈତନ୍ୟ ଅଭିମାନରେ କହିଲେ – 'ହେ କୃଷ୍ଣ ! ତୁମେ ସେଇ ନା ! ଯିଏ ମୋ କୌମାର୍ଯ୍ୟ ବେତ୍ରସି ତରୁ ତଳେ ହରଣ କରିଥିଲା । ଆଜି ମତେ ଭୁଲି ତୁମେ ଏକା ଏକା ଯାତ୍ରା କରିପାରୁଛ ?' ତା'ପରେ ଚୈତନ୍ୟ କୁଆଡ଼େ ଜ୍ଞାନ ଶୂନ୍ୟ ହୋଇ ଧରଣୀରେ ଲୋଟିଲେ । ଅନତିଦୂରେ ଜଗନ୍ନାଥ ବଲ୍ଲଭର ବାରଣ୍ଡାରୁ ରାୟ ରାମାନନ୍ଦ ଏ ଦୃଶ୍ୟ ଦେଖି ପାରିଥିଲେ । ଚୈତନ୍ୟଙ୍କୁ ସେ ହାତରେ ଟେକି ଆଣି ନିଜ ନିକଟରେ କିଛିଦିନ ରଖିଥିଲେ । ରାୟ ରାମାନନ୍ଦଙ୍କ ତାତ୍ତ୍ୱିକ ବିଶ୍ଳେଷଣ ଓ ଗଭୀର ଭକ୍ତିଭାବ ଚୈତନ୍ୟଙ୍କୁ ପ୍ରଭାବିତ କରିଥିଲା । ରାୟ ରାମାନନ୍ଦ ଦାସୀ ତିଆରି କରି ନିଜ ହାତରେ ତାକୁ ସଜେଇ ଜଗନ୍ନାଥଙ୍କ ସେବା ପାଇଁ ପଠେଇ ପାରୁଥିଲେ । ସେ ଦେହାତୀତ ସ୍ତରରେ ପହଞ୍ଚି ସାରିଥିଲେ । ଚୈତନ୍ୟ ଏତେ ଦୂର ପ୍ରଭାବିତ ହୋଇଥିଲେ ଯେ – ଯେତେବେଳେ ପ୍ରତାପରୁଦ୍ରଙ୍କର ଅନ୍ୟତମ ମନ୍ତ୍ରୀ ପ୍ରଦ୍ୟୁମ୍ନ ମିଶ୍ର, ରାଧାକାନ୍ତ ମଠରେ ଚୈତନ୍ୟଙ୍କୁ ଭେଟି କୃଷ୍ଣ

ପ୍ରେମର ତତ୍ତ୍ୱ ବୁଝିବାକୁ ପ୍ରଶ୍ନ କରିଥିଲେ – ସେତେବେଳେ ଚୈତନ୍ୟ ଉତ୍ତର ଦେଲେ –

"କୃଷ୍ଣ ପ୍ରେମ କଥା ଚୈତନ୍ୟ କିଛୁ ନାଇଁ ଜାନେ
ଯଦି କେହୋ ଜାନେ ରାୟ ରାମାନନ୍ଦ ଜାନେ।"

ଏଇଠି ଗୌଡ଼ୀୟ ବୈଷ୍ଣବ ପନ୍ଥାର ଆଦି ଚେତନା ଯେ ଓଡ଼ିଆ ସୃଷ୍ଟ – ଏକଥା ପ୍ରତିପାଦିତ ହୁଏ। କିନ୍ତୁ ଓଲଟ ସୁଅରେ ପରବର୍ତ୍ତୀ କାଳରେ ଓଡ଼ିଆଏ ହେଲେ ଗୌଡ଼ୀୟ ବୈଷ୍ଣବଙ୍କର ଶିଷ୍ୟ। ପୁରୀକୁ ପ୍ରାଗୈତିହାସିକ ଯୁଗରୁ ସବୁ ଧର୍ମଗୁରୁ ଆସିଛନ୍ତି। ଏଠି ସେମାନଙ୍କର ଦର୍ଶନ ଓ ପନ୍ଥାର ପ୍ରଚାର ପାଇଁ ମଠ ସ୍ଥାପନ କରିଛନ୍ତି। ଓଡ଼ିଆମାନେ ବି ତାଙ୍କ ପନ୍ଥାରେ କିଛିଦିନ ନାଚିଛନ୍ତି – ମାତିଛନ୍ତି। କିନ୍ତୁ ସମଗ୍ର ଓଡ଼ିଆ ଜାତି କେବେହେଲେ ସବୁଦିନ ପାଇଁ ଜଗନ୍ନାଥ ଛଡ଼ା ଅନ୍ୟ କୌଣସି ବାବାଙ୍କୁ ମାନି ନାହିଁ। ସବୁ ବାବାମାନେ ତେଣୁ ଜଗନ୍ନାଥଙ୍କ ମାଧ୍ୟମରେ ହିଁ ନିଜର ଦର୍ଶନର ପ୍ରଚାର ଓ ପ୍ରସାର ପାଇଁ ଚେଷ୍ଟା କରିଛନ୍ତି। ଗୋଟେ 'ଜଗନ୍ନାଥ' ବାବା ପରି ଏତେ ବଡ଼ ବାବାଥିବାରୁ କେହି ଓଡ଼ିଆ ବି ଭାରତରେ ବାବା ହେଉନି ବରଂ ଜଗନ୍ନାଥ ଦାସ ଓଡ଼ିଆଙ୍କ ମନୋଭାବକୁ ବ୍ୟକ୍ତ କରି କହିଛନ୍ତି –

'ସକଳ ତୀର୍ଥ ତୋ ଚରଣେ
ବଦ୍ରିକା ଯିବି କି କାରଣେ ?'

ସେ ଯାହା ହେଉ ଚୈତନ୍ୟଙ୍କ ମତ ଅନୁସାରେ ଭକ୍ତ ଭଗବାନଙ୍କ କାନ୍ତା ସଦୃଶ। ଭକ୍ତ ସହ ଭଗବାନଙ୍କ ସମ୍ପର୍କ ଏକ ପରକୀୟା ପ୍ରୀତି। କବି ଦୀନକୃଷ୍ଣ ବୈଷ୍ଣବ ଥିଲେ ତ – ତେଣୁ ପୁରୀର ସବୁ ଲୋକଙ୍କୁ ଭକ୍ତ ଭାବେ ପରିଗଣିତ କରି ତାଙ୍କୁ ନାରୀ ଭାବେ ଦେଖିଛନ୍ତି। 'ନଟୁଚୋରୀ' କବିତାର ଭଣିତାରେ ସେ ନିଜକୁ ଦୀନ-ସୁନ୍ଦରୀ ବୋଲି ବି ବର୍ଣ୍ଣନା କରିଛନ୍ତି।

– ଏଇଟା କ'ଣ ମାଇଚିଆଙ୍କ ରାଜ୍ୟ ? ସେଇ ବୈଷ୍ଣବଙ୍କ ଲାଗି ତ ଓଡ଼ିଆ ଜାତି ଖଣ୍ଡା ଛାଡ଼ି ଖୋଳ ଧରିଲା – ଆପଣ କାହିଁକି ଆମକୁ ସେ ବାଜେ କଥା ଶୁଣୋଉଛନ୍ତି ?

– ବୈଷ୍ଣବଙ୍କ ପାଇଁ ମୁଁ ଯୁକ୍ତି କରୁଚି ବାବୁ ! ଦୀନ କୃଷ୍ଣଙ୍କର ଗୋଟିଏ ଧାଡ଼ିରୁ କଥାଟା ଆରମ୍ଭ ହେଲା ବୋଲି କହିଲି।

ବୃଦ୍ଧ ଯାତ୍ରୀ ଜଣକ ଏଥର ନିଜକୁ ସମ୍ଭାଳି ପାରିଲେନି।

– ତମେମାନେ ପିଲେ 'ନଟୁଚୋରୀ' ପଢ଼ିଛ ?

– ହୁଁ। କୋଉ 'Waste-Land' ହେଇଛି ଯେ !

– ମୁଁ ବୁଝି ପାରୁନି ବାବୁ ! ହେଲେ ଆମ ଗାଁ ଭାଗବତ ଟୁଙ୍ଗୀରେ ମୃଦଙ୍ଗ, ଖୋଳ ବଜେଇ ଗୁରୁ ଧରି ଆମେ ଗାଇଛୁ 'ନଟୁଚୋରୀ' ପିଲାବେଳୁ। ଶୁଣିବ ?

– ହଉ ହଉ ମଉସା ଶୁଣାଅ।

ଦି'ଚାରିଜଣଙ୍କ ପ୍ରରୋଚନାରେ ବୃଦ୍ଧ ତାଙ୍କ ଥର ଥର ଗଳାରେ ଆରମ୍ଭ କଲେ –

ଭୃଙ୍ଗ ଜାଣେ ସିନା କୁସୁମର ବାସ
ବୈଦ୍ୟ ଜାଣେ ନାଡ଼ି ଅନ୍ତ
ପଦ୍ମର ମୁଣ୍ଡରେ ମଣ୍ଡୁକୀ ବସିଣ
ସେ ଜାଣଇ କି ବୃତ୍ତାନ୍ତ ଲୋ
ନଟୁ ନ ଦେଲେ ମୋର
ବସ୍ତ୍ର, ଝାଡ଼ି ଦେଖା ତତପର ଲୋ. . .

– ଆରେ ବାଃ ବାଃ ।

ଟୋକାଏ ଚିର୍ ଚିରେଇ ଉଠିଲେ । ବୃଦ୍ଧ ଏଥର ଥରେ ଖାଶି ନେଇ ଗଳା ସଫା କଲେ ଏବଂ ପୁଣି ଗାଇଲେ –

ବସ୍ତ୍ର ତଳେ ନଟୁ ଯୋଡ଼ିକ ରଖିଛୁ
ଦେଖାଅ ବସନ ପେଡ଼ି
ସତକୁ ସମସ୍ତେ ବିଚାର କରିବେ
ମିଛକୁ ଦେବେ ଘଉଡ଼ି ଗୋ
ଶୁଣି ଯଶୋଦା ବୋଲେ
ରାଧା ବସନ ଫେଡ଼ି କହିଲେ ଗୋ. . .
ଯଶୋଦାର ବାଣୀ ଶ୍ରବଣରେ ଶୁଣି
ରାଧିକା ଚକିତ ହେଲେ
ତକ୍ଷଣେ ବସନ ଫେଡ଼ିଣ ଦିଅନ୍ତେ
ନଟୁ ଅବନୀ ପଡ଼ିଲେ ଲୋ
ରାଧା ହେଲେ ଚକିତ
ସେ ତ ଗଣ୍ଡରେ ମାଇଲେ ହାତ ଲୋ. . .
ରାଧିକାର ସ୍ତନ ଯଉବନ ଦେଖି
କହନ୍ତି ଦେବ ମୁରାରୀ
ନଟୁ ଦୁଇ ମୋର ସାକ୍ଷାତରେ ଦେଲ
ଏବେ ଦିଅ ନଟୁ ଚୋରୀ ଗୋ
ଶୁଣି ରାଧା କହଇ. . .

ବୃଦ୍ଧଙ୍କର ରାଗ ବିହ୍ୱଳ କଣ୍ଠଥରା ସଙ୍ଗୀତର ମୂର୍ଚ୍ଛନା ବସ୍‌ର ଅନ୍ୟ ଯାତ୍ରୀଙ୍କୁ ବି ମୁଗ୍ଧ କରିଥିଲା । ସକାଳର ଶାନ୍ତ ପରିବେଶ ଭିତରେ ବସ୍‌ର ନିରଳସ ଯାତ୍ରାରେ କେତେ ଆଉ କ'ଣ ଭାବୁ ଭାବୁ ଦୀନକୃଷ୍ଣଙ୍କର ଏ କବିତା ମତେ ବି ଭାବ ବିହ୍ୱଳ କରିଥିଲା । କିନ୍ତୁ ଯୁବକ ଯୁବତୀଙ୍କ ଦଳଟି ହୋ ହୋ ହେଇ ହସୁଥିଲେ –

What a pornographic literature!

– ଏମିତି ଅଶ୍ଳୀଳ ଲେଖାକୁ ବି ଭକ୍ତି କବିତା କୁହାଯାଏ ?

ବୃଦ୍ଧ ସେତେବେଳକୁ ଗାଇବା ବନ୍ଦ କରି ଲୁଗା କାନିରେ ଚଷମା ତଳେ ଜମିଥିବା ଲୁହ ପୋଛୁଥିଲେ ।

– ଭକ୍ତର ଭାବପୂର୍ଣ୍ଣ ରସାପ୍ଲୁତ ଆବେଦନକୁ ଅଶ୍ଳୀଳ କହି ପାରୁଛ ପିଲେ ? ଭାଷାର ଲାଳିତ୍ୟ, ଛନ୍ଦର ମାଧୁର୍ଯ୍ୟ, ଚିନ୍ତାର କୌଳିନ୍ୟ, ଧର୍ମ ଧାରଣାର ଲୋକାୟତ ପରିପ୍ରକାଶ କିଛି ବୁଝିଲନି ? ତମ ବ୍ଲୁ ଫିଲ୍ମ, ବିଦେଶୀ ଅଶ୍ଳୀଳ ବହି କ୍ଳବ୍ ବା ହୋଟେଲର 'କାବାରେ' ନୃତ୍ୟ କିମ୍ବା ଶସ୍ତା ସିନେମା ସଙ୍ଗୀତ ସହ ଓଡ଼ିଆ ଜାତିର ଅନ୍ୟତମ ଶ୍ରେଷ୍ଠ କବିଙ୍କୁ କ'ଣ ତୁଳନା କରାଯାଏ ? ଛି ଛି...

ସିରିୟସ୍ ଦେଖା ଯାଉଥିବା ଝିଅଟି ତା ସାଥୀଙ୍କୁ ସଙ୍କେତରେ ସାବଧାନ କଲା –

ଛାଡ଼ବେ ! ତୁ ଗୋଟେ ଗୀତ ଗାଇଲୁ ରାକେଶ । ନ ହେଲେ ମାଉଥ ଅର୍ଗାନଟା ମତେ ଦିଅ – ସିଗାରେଟ୍ ଧୂଆଁରୁ ବାବାଜୀଙ୍କ ଆଡ଼େ ଛାଡ଼ି ସବୁଠୁ ଉଦ୍ଧତ ଲାଗୁଥିବା ଯୁବକ ତା'ର ବନ୍ଧୁ ରାକେଶକୁ ଗୀତ ପାଇଁ ଆହ୍ୱାନ କରୁଥିଲା ଏବଂ ରାକେଶ ବାବାଜୀଙ୍କୁ ଅନୁରୋଧ କରୁଥିଲା ।

– ଦୀନକୃଷ୍ଣଙ୍କ ବିଷୟରେ ଆଉ କିଛି କୁହନ୍ତୁ ।

– କ'ଣ କହିବି ? ସାତଦିନ ସାତରାତି ଲାଗି ଯିବ ବାବୁ !

ସେମାନଙ୍କ କର ସିଟ୍‌ରେ ବସିଥିବା ଅନ୍ୟ ଜଣେ ସୌମ୍ୟ ଯୁବକ, ବୟସ ପଇଁତିରିଶ ପାଖ ହେବ । ବେଶ୍ ସ୍ୱପ୍ନିଳ ଆଖି ଏବଂ ସେ ଆଖିରେ ଏକ କବିର ଚାହାଣି । ଗୋରା ମୁହଁ – କୁଞ୍ଚ କୁଞ୍ଚିଆ କେଶରାଶୀ । ଅଧାପକ ହେବେ ପରା ! ବସ୍‌ର କଣ୍ଡକ୍ଟର ଟିକେଟ୍ କାଟିଲାବେଳେ ତାଙ୍କୁ 'ସାରେ' ସମ୍ବୋଧନ କରି ପଚାରିଥିଲା – 'କ'ଣ ସାରେ ! ପୁରୀକି କାଟିବି ଟି ?' ଏଥର ସେ ମୁହଁ ଖୋଲିଲେ ।

– ଆପଣମାନେ କ'ଣ କୌଣସି କଲେଜର ଛାତ୍ରଛାତ୍ରୀ ?

– ବିଶ୍ୱବିଦ୍ୟାଳୟର ।

ଅଧାପକଙ୍କ ଓଠ ଦେଇ ଏକ ଶୁଖିଲା ହସର ତରଙ୍ଗ ଲହଡ଼ି ଭାଙ୍ଗି ପୁଣି ମିଳେଇ ଗଲା ।

– ଦୀନକୃଷ୍ଣ କେବଳ ଭକ୍ତକବି ନଥିଲେ – ତା ଆଦ୍ୟ ଅଷ୍ଟାଦଶ ଶତାବ୍ଦୀର ଅନ୍ୟତମ ବିଦ୍ରୋହୀ ଆତ୍ମା – ଯିଏ ରାଜତନ୍ତ୍ରର ପାଦତଳେ ମଥାନତ କରି ନଥିଲା । ଦୀନକୃଷ୍ଣଙ୍କର ଜଣେ ମାହାରୀ ଥିଲେ ପ୍ରେରଣାର ଉତ୍ସ । ଠିକ୍ ସେଇ ମାହାରୀଙ୍କ ପାଇଁ ରାଜାଙ୍କର ମଧ ଥିଲା ଅହେତୁକ ଲାଳସା । ଦୀନକୃଷ୍ଣଙ୍କ କବିତା କିନ୍ତୁ ମାହାରୀ ପାଇଁ ଥିଲା ବେଶୀ ଆକର୍ଷଣୀୟ ଓ ଆଦରଣୀୟ । କବି ପ୍ରତିଭାକୁ ଯେ କିଣାଯାଇ ପାରେ ଏବଂ ଦୀନକୃଷ୍ଣ ସେ ରାଜାର ସିଂହାସନ ନିକଟରେ ଅତି ତୁଚ୍ଛ, ଏହା ପ୍ରତିପାଦିତ କରିବା ପାଇଁ ରାଜା ଚାହୁଁଥିଲେ ଦୀନକୃଷ୍ଣ ତାଙ୍କ ପାଇଁ କବିତା ରଚନା କରନ୍ତୁ । ପ୍ରତି ବଦଳରେ ରାଜା

ତାଙ୍କୁ ପାଟ କୁଣ୍ଡଳ, ଗ୍ରାମ ଓ ରାଜ୍ୟ ଦେବାର ପ୍ରଲୋଭନ ନୋହିଲେ ସର୍ବନାଶ କରିବାର ଭୟ ବି ଦେଖେଇଲେ। କିନ୍ତୁ ଦୀନକୃଷ୍ଣଙ୍କର କବି ହୃଦୟ କ'ଣ ଉତ୍ତର ଦେଲା ଜାଣନ୍ତି ? ଦାଢ଼୍ୟତା ଭକ୍ତିରେ ତାର ବର୍ଣ୍ଣନା ଅଛି –

ଦୀନକୃଷ୍ଣ : ବୋଇଲେ ଶୁଣ ନୃପନାଥ
କେବଳ ଦେବ ଜଗନ୍ନାଥ
ଏ ପିଣ୍ଡ ବିକି ଅଛି ତାରେ
ଗୀତ ମୁଁ ନ ବୋଲେ ଅନ୍ୟରେ

ରାଜା : ମୋ ନାମ ଭଣିଲେ ଅବଶ୍ୟ
ଅନେକ ଦେବି ଗ୍ରାମ ଦେଶ
ମୋ ରାଜ୍ୟେ ଦେବୀ ଅଧିକାର
ଦେଖ ମୁଁ ଜଗତ ଈଶ୍ୱର
ନୋହିଲେ ମରିବୁ ଅବଶ୍ୟ
ଛାଡ଼ ତୋ ଜୀବନର ଆଶ

ଦୀନକୃଷ୍ଣ : ତୁମ୍ଭଙ୍କୁ ନାହିଁ ମୋର ଡର
ମୋ ପ୍ରଭୁ ବଳେ ବଳିଆର
ଜଗତ ସୃଷ୍ଟି ଆନ ହେଲେ
ଗୀତ ମୁଁ ଆନକୁ ନ ବୋଲେ।

କବି ଓ କବିତା-ଲେଖାଳୀର ଫରକ ଏଇଠି। କବିର ଜୀବନ ବଞ୍ଚିବାକୁ ଯାଇ ଦୀନକୃଷ୍ଣ କଣ ଭୋଗିଲେ ଜାଣନ୍ତି ? ତାଙ୍କୁ ପୁରୀରୁ ବାଛନ୍ଦ କରାହେଲା। ସେ ମାହାରୀ ସହିତ ଦୀନକୃଷ୍ଣଙ୍କର ଯେପରି ଭେଟ ନହୁଏ, ସେଥିପାଇଁ ମାହାରୀ ଦୁଆରେ ପାଇକ ଜଗିଲେ। ଦୀନକୃଷ୍ଣ ପୁରୀର ଉପାନ୍ତରେ କୁଷ୍ଟ ରୋଗୀଙ୍କ ବସତି ଭିତରେ ଏକ ପର୍ଣ୍ଣକୁଟୀର କରି ବସବାସ କଲେ – କେବଳ ନୀଳଚକ୍ର ଆଉ ପତିତ-ପାବନ ବାନାର ଲୋଭ ସମ୍ବରଣ କରିପାରି ନଥିଲେ ବୋଲି। ଖାଦ୍ୟାଭାବରୁ କୃଷ୍ଟରୋଗୀଙ୍କ ଭିକ୍ଷାର୍ଜିତ ଅନ୍ନରେ ପ୍ରତିପାଳିତ ହୋଇ କାବ୍ୟ ରଚନା କରି ଚାଲିଲେ। ଅବଶେଷରେ ନିଜେ କୁଷ୍ଟବ୍ୟାଧିରେ ଆକ୍ରାନ୍ତ ହେଲେ। ଏହିପରି ଦୀନହୀନ ଅବସ୍ଥାରେ ତାଙ୍କ ପ୍ରାଣବାୟୁ ଚାଲିଗଲା; କିନ୍ତୁ ଜୀବନ ଚର୍ଯ୍ୟାରେ ଯେଉଁ ମହନୀୟ କବି-ଜୀବନର ଅମର କିର୍ତ୍ତୀ ଗଢ଼ିଗଲେ – ତା'ର ପଟାନ୍ତର ପୃଥିବୀ ଇତିହାସରେ ବିରଳ। ସେତେବେଳକାର ରାଜାର ନାମ ମୋର ମନେ ନାହିଁ – ପୁରୀର ବା ଓଡ଼ିଶାର ଯଦି କେହି ସେ ରାଜାର ନାମ ମନେ ରଖିଥିବେ – ତା' କେବଳ ଏଇଥିପାଇଁ ଯେ ଦୀନକୃଷ୍ଣଙ୍କୁ ସେ ଜାଣତରେ ମାରିଥିଲା – କିନ୍ତୁ ଦୀନକୃଷ୍ଣ ? ରସ କଲ୍ଲୋଳର ସେ ଧାଡ଼ିକ ଏବେ ବି ମୁଁ ଭୁଲିନି –

କାହାରି ହୃଦ ଦ୍ରବଇ ନାହିଁ,
ଜଳ ଉତ୍ପଳ ପରାଏ ହୋଇ
କେବଳ ବାହାରକୁ ଡିଣ୍ଡିଲା ପରାଏ ଦିଶେ
କରନ୍ତି ଅଙ୍ଗେ ଅନେକ ଛାପ,
କେହି ନ ଜାଣେ ଭିତର ପାପ
ଚିତ୍ରକାରକୁ ପଟ ପରାଏ ପ୍ରତ୍ୟେକ୍ଷେ ଦିଶେ
କଥା କଥାକେ କହିବାକୁ ଏ ଶଳ ଯେ
କିମ୍ବା ଦୀନକୃଷ୍ଣକୁ ଏମନ୍ତ କଲ ହେ
କବି ଯା' କରେ ମୂର୍ଖକୁ ସ୍ତୁତି
ଏଥିରୁ ବଡ଼ ନାହିଁ ବିପତ୍ତି
ଏଥିକି ପ୍ରତି ଛାତିରେ କାତି ମାରିବା ଭଲ ହେ!

–ରିବେଲ୍ - ଏଁ? ହାଃ – ସୋଲଝେନିତ୍‌ସିନ୍ ନା କାମୁ?

ଜଣେ କିଏ ଛାତ୍ରମାନଙ୍କ ଭିତରୁ ଉପହାସ କଲା।

– ଆପଣମାନଙ୍କ ପାଇଁ କ'ଣ ବିଦେଶୀ ମାପକାଠି ଛଡ଼ା ଏ ଦେଶ ପ୍ରତିଭାର ମୂଲ୍ୟାୟନ କରିବା ଅସମ୍ଭବ? ନିଜ ମାଆଙ୍କୁ ଚିହ୍ନିବାକୁ କ'ଣ ଜଣେ ବିଦେଶିନୀଙ୍କୁ ପ୍ରଥମେ 'ମମି' ଡାକିବାକୁ ପଡ଼ିବ?

ଅଧ୍ୟାପକ ମହାଶୟ ବିରକ୍ତ ହେଲେ। ସିରିୟସ ଦେଖା ଯାଉଥିବା ଝିଅଟି ଏଥର ମୁହଁ ଖୋଲିଲା।

– ସାର୍ ଛାଡ଼ନ୍ତୁ ସେ କଥା। ସେମାନେ ବି ବୁଝୁଛନ୍ତି – କିନ୍ତୁ ନିଜର ଗୋଟାଏ ଇଉରୋପୀଅନ୍ ଭ୍ୟାନିଟି ଅଛିତ! କନ୍‌ଭେଣ୍ଟ-ସିନିଅର କେମ୍ବ୍ରିଜ – ତା'ପରେ କ୍ଷମା କରନ୍ତୁ।

– ଠିକ୍ ଅଛି! ଦୁଃଖୀ ସିନା ହେବି – ରାଗିବି କାହିଁକି?

– ଆପଣ ଯାହା କହିଲେ ତାହାହିଁ ଠିକ୍ – କବି ଜୀବନର ଟ୍ରାଜେଡ଼ି ହିଁ ତ ତା'ର ଗ୍ରେଟ୍‌ନେସ୍! Rephaelଙ୍କ ଭାଷାରେ – 'He is difeated, but her reamins great, sublince, in his fall. The greatness of his opponent is greatness of physical power. His own greatness is greatness of spirit.'

ମୋର କୌତୂହଳ ବଢ଼ିଲା। ଆଲୋଚନା ବେଶ୍ ସରଗରମ ହେଇ ଆସୁଛି। ମୋ ବ୍ୟକ୍ତିଗତ ଯନ୍ତ୍ରଣା ଓ ଚାକିରୀ ଜୀବନର ବିଫଳତା ସହ ମୋ କବିତାର ସଂପର୍କକୁ ସତେ ଯେପରି ସେ ଝିଅଟି ଗୋଟିଏ ଉଦ୍ଧୃତିରେ ମହନୀୟ କରିଦେଲା – ଅଧ୍ୟାପକଙ୍କ ଚିନ୍ତାଧାରାକୁ ସମର୍ଥନ କରି। ମୁଁ ସେ ଉଭୟଙ୍କୁ କୃତଜ୍ଞତାଭରା ମନନେଇ ଚାହୁଁଥିଲି।

ସେମାନଙ୍କ ମୁହଁ ଦେଇ ମୁଁ ଦେଖୁଛି ନଡ଼ିଆ ଗଛ। ଘର, ନଈ, ପୋଖରୀ, ବୁଦା, ଝାଟି, ଇଟାଭାଟି ସବୁ କିଛି ପଛକୁ ଦୌଡୁଛି...

ବାମ ଦିଗରେ ହରେକୃଷ୍ଣପୁରର ଚନ୍ଦନ ପୋଖରୀ ବି ଚାଲିଯାଉଛି। ଚାରିପଟେ ନଡ଼ିଆ ଗଛ – ମଝିରେ ଦୀପ ଦାଣ୍ଡି। ଶ୍ୟାମବର୍ଣ୍ଣର କାଚକେନ୍ଦୁ ଗଭୀର ଜଳରାଶି।

– ପୁରୀର ନରେନ୍ଦ୍ର ପୁଷ୍କରିଣୀ ନ ହେବା ଆଗରୁ ଜଗନ୍ନାଥଙ୍କର ଚନ୍ଦନଯାତ୍ରା ଏଇଠି ହଉଥିଲା ବୋଲି ଲୋକେ କୁହନ୍ତି।

ବାବାଜୀ ମହାଶୟ ବୃଦ୍ଧଙ୍କୁ କହୁଥିଲେ। ଅଧ୍ୟାପକ ମହାଶୟ ଶୂନ୍ୟ ଦୃଷ୍ଟିରେ ବାହାରକୁ ଚାହିଁ ରହିଥିଲେ। କଣ୍ଡକ୍ଟର ବାକିଆ ଟିକେଟ୍ ପଇସା ଫେରଉଛି – ପୁରୀ ହେଇ ଆସୁଥିବାର ନିଶ୍ଚିତତା।

ଆଗରେ ଦିଶୁଛି ଏକ ସରକାରୀ ବିଜ୍ଞାପନ। ସିମେଣ୍ଟ ଖୁମ୍ବରେ ତିଆରି। ହଳଦିଆ ରଙ୍ଗର ପଲସ୍ତରା ଉପରେ କଳା ଓ ନାଲି ରଙ୍ଗରେ ଲେଖା ହେଇଛି – ସେଇଠୁ ଡାହାଣ ଦିଗକୁ ଦେଖିଲେ ଶ୍ରୀମନ୍ଦିରର ଶୋଭା ଉପଭୋଗ କରି ହେବ – 'ନ ପହଞ୍ଚିବା ଠାରୁ ବିଳମ୍ବରେ ପହଞ୍ଚିବା ଭଲ' – 'ତୁମର ଜୀବନ ଆମ ପାଇଁ ପ୍ରିୟ – ତୁମର ବେଗ ନୁହେଁ' ଇତ୍ୟାଦି ଯନ୍ତ୍ରଣାଦାୟକ ରାସ୍ତା କରର ନୀତିବାକ୍ୟ ଭିତରେ ଏକ ବ୍ୟତିକ୍ରମ।

ଡାହାଣ କରକୁ ଆପେ ନଜର ଘୂରିଗଲା। ସମଗରା ପାଟ। ବର୍ଷାଦିନରେ ପାଣି ରାସ୍ତାରେ ଲହଡ଼ି ଭାଙ୍ଗିବା ପରି ହେଇଯାଏ – ଖରାଦିନରେ ତାଲୁଅ ଚାଷ ହୁଏ, ଇଟାଭାଟି ହୁଏ – କାହିଁ ଯେ କେତେଦୂର – ଆଖି ପାଇ ପାରେନି। ସବା ଶେଷରେ ନଡ଼ିଆ ଗଛର ବଣ ପରି ଦିଶୁଛି ଏବଂ ତା'ରି ଦିଗନ୍ତରେ ଦିଶୁଛି – ମାଟିରେ ମୁଠି ପାଖ ପୋତା ହେଇ ମୁନ ପାଖ ଉପରକୁ ଥିବା ଏକ ଖଣ୍ଡା ପରି – ଶ୍ରୀମନ୍ଦିର। ଶ୍ରୀବତ୍ସ ଖଣ୍ଡାଶାଳ ପଦ୍ଧତିରେ ମନ୍ଦିର ନିର୍ମାଣ ହୋଇଛି। ଓଡ଼ିଆଙ୍କର ଏହା ଏକ ବିଶେଷତ୍ୱ – ନିର୍ମାଣ କୌଶଳରେ। ଲୋକଙ୍କର ହାତ ଆପେ ଆପେ ଉଠି ଆସି ମୁଣ୍ଡ ଛୁଆଁ ନମସ୍କାର କରେ ଜଗତର ନାଥଙ୍କୁ ଏବଂ ବୋଧେ ତାରି ଭିତରେ ସେଇ ଅଜଣା ଶିଳ୍ପୀ ସମୂହଙ୍କୁ – ଯାହାଙ୍କର ଅମରକୀର୍ତ୍ତୀ ଆଜି ଆମକୁ ଗୋଟାଏ ଜାତିର ଗର୍ବବୋଧରେ ମହିମାନ୍ୱିତ କରେଇଥାଏ।

ହଠାତ୍ ଗାଡ଼ି ରୋକିଗଲା। ବାବାଜୀ ମହାଶୟ ବୃଦ୍ଧଙ୍କୁ କହିଲେ – ବାଟମଙ୍ଗଳା। ଲୋକେ ଆପେ ଆପେ ହାତ ଯୋଡୁଛନ୍ତି। ଗାମୁଛା ପିନ୍ଧା ପିଲାଟିଏ ଫାଳିକିଆ ଷଢ଼େଇଟିରେ ଠାକୁରାଣୀଙ୍କ ସିନ୍ଦୂର ଧରି ଗାଡ଼ିଆଡ଼େ ଆସିଲା। ବସ୍‌ର କଣ୍ଡକ୍ଟର ମୁସଲମାନ ନାମରୁ ବୁଝା ପଡୁଥିଲା। ରାସ୍ତାଯାକ ପ୍ରତି କଥାରେ ଥଟ୍ଟା ପରିହାସ କରି କରି ଆସିଛି। ସେହିଁ ତା ଚମଡ଼ା ବ୍ୟାଗ୍‌ରୁ ପଇସା କାଢ଼ି ପିଲାଟି ଆଡ଼େ ବଢ଼େଇ ଦେଲା ଆଗ।

– ଆଜ୍ଞା ସିନ୍ଦୂର ନିଅନ୍ତୁ; ଯାହାର ଦରକାର।

– କିଓ ତମେ କ'ଣ . . .

ବାବାଜୀଙ୍କର କଥା ଅଧକରେ ଅଟକି ଗଲା – କଣ୍ଡକ୍ଟର ଉତ୍ତରରେ।

– ମହମ୍ମଦ ପାଇଁ ବସ୍‌ର ଯାତ୍ରୀଙ୍କ ଜୀବନ ବଡ଼ ଆଜ୍ଞା, ଆଉ ଏ ଠାକୁରାଣୀ ବାଟକୁ ମଙ୍ଗଳ। ସିଏ କ'ଣ ମା' ହେଇ କିଏ ମହମ୍ମଦ, କିଏ ରବିନ୍, କିଏ ରାଜୁ ବୁଝୁଛି। ନାଁ ସେ ପିଲା ଯେଉଁ ପଇସା ନେଲା ସିଏ ପଇସା ଉପରେ କାହାର କି ଛାପ ଦେଖୁଛି ! ମନ ଆଜ୍ଞା ବଡ଼ କଥା। ମୁଁ ତ ଦେଉଳର ଭୋଗଖାଏ – ସାଲବେଗର ଗୀତ ବି ଗାଏ। ଆପଣ ମନାକରି ଦେବେ ? ସବୁ ବସ୍‌ବାଲାଙ୍କର ଏ ଠାକୁରାଣୀ – ବସ୍ ମଙ୍ଗଳା ଅଜ୍ଞା !

ବୃଦ୍ଧ ସିନ୍ଦୂର ଲଗଉ ଲଗଉ ଗଳାରେ, ବାବାଜୀଙ୍କୁ ପଚାରୁଥିଲେ,

– ବାଟ ମଙ୍ଗଳାଙ୍କ ବିଷୟରେ କିଛି ଜାଣନ୍ତି ?

– ନା !

– ଅଧ୍ୟାପକ ମହାଶୟ କିଛି କୁହନ୍ତୁ . . .

ଏଥର ଅଧ୍ୟାପକ ବାବାଜୀ ଓ ବୃଦ୍ଧଙ୍କ ସିଟ୍ ଆଡ଼କୁ ଟିକେ ମାଡ଼ିପଡ଼ିଲେ। ଆଗ ସିଟ୍‌ର ଛାତ୍ରଛାତ୍ରୀ ଦଳଟି ମଧ୍ୟ ମୁହଁ ବୁଲେଇ ନଇଁ ଆସିଲେ।

– ବାଟ ମଙ୍ଗଳାଙ୍କ ଉପରେ ମୁଁ ଯାହା ଜାଣେ ସେ ସବୁ କିମ୍ବଦନ୍ତୀ ଉପରେ ଆଧାରିତ। ସତ କି ମିଛ ଜାଣେନି। ତେବେ ଲୋକେ କୁହନ୍ତି ଶଙ୍ଖନାଭି କ୍ଷେତ୍ରକୁ ପ୍ରଥମେ ବାଟ ନଥିଲା। ପୁରୀ ଉପାନ୍ତରେ ଯେଉଁ ନଦୀଟିକୁ ଆପଣ ଦେଖିବେ ତା'ର ପୁରୁଣା ନାମ ଥିଲା 'ସରୟ'। ଆଜିକାଲି ତାକୁ ମୂଷା ନଈ କହୁଛନ୍ତି। ପୁରୀକୁ ଯିବା ପାଇଁ ଏଇ ନଈ ଓ ସମଗରା ପାଟ ଥିଲା ପ୍ରତିବନ୍ଧକ। ସେଥିପାଇଁ ନଈ ଉପରେ ଅଠରନଳା ଓ ପାଟ ଉପରେ ବନ୍ଧ ତିଆରି ହେବାବେଳେ – ପ୍ରଥମେ ଏଇଠି ମଙ୍ଗଳା ସ୍ଥାପନ କରି, ବଳୀ ଇତ୍ୟାଦି ଦେଇ ନିର୍ମାଣ କାର୍ଯ୍ୟ ଆରମ୍ଭ ହେଇଥିଲା। ପରେ ଲୋକେ ତାଙ୍କୁ ବାଟ ମଙ୍ଗଳା ବୋଲି ଖ୍ୟାତ କଲେ। ଆଉ ଏକ ପ୍ରକାର କଥା ବି ଅଛି – କାଞ୍ଚିକାବେରୀ ଅଭିଯାନ ସମୟରେ ପୁରୁଷୋତ୍ତମ ଦେବ ଯାତ୍ରାର ଶୁଭ କାମନା କରି ମଙ୍ଗଳା ସ୍ଥାପନ କରିଥିଲେ। ଏହାଛଡ଼ା ଗୋଟିଏ କୌତୂହଳ ପୂର୍ଣ୍ଣ ଘଟଣା ଏଇଠି ଘଟିଥିବାର ବି ଲୋକ ମୁଖରୁ ଶୁଣାଯାଏ – ଗାଣପତ୍ୟ ଭଟ୍ଟଙ୍କ ବିଷୟରେ –

ଗାଣପତ୍ୟ ଭଟ୍ଟ ଥିଲେ ଜଣେ ଗଣନାଥ ଆରାଧକ ତଥା ମହାପଣ୍ଡିତ। କେଉ ଶତାବ୍ଦୀରେ ଯେ ସେ ଓଡ଼ିଶା ଆସିଥିଲେ ସେ ବିଷୟରେ ଇତିହାସ ମୂକ। ଜଗନ୍ନାଥ ଦର୍ଶନ ପାଇଁ ଆସି ବାଟ ମଙ୍ଗଳାଙ୍କ ନିକଟରେ ସେ କ୍ଳାନ୍ତ ହୋଇ ବିଶ୍ରାମ ନେଉଥିବାବେଳେ କେତେକ ତୀର୍ଥଯାତ୍ରୀ ଦର୍ଶନ କରି ଫେରୁଥିବାର ଦେଖିଲେ ଏବଂ ତାଙ୍କୁ ପ୍ରଶ୍ନ କଲେ – ସେମାନେ ଜଗନ୍ନାଥଙ୍କ ଦର୍ଶନ ପାଇଛନ୍ତି ନା ନାହିଁ। ଯାତ୍ରୀମାନେ ହଁ କହନ୍ତେ – ପଣ୍ଡିତେ କ୍ଷୁବ୍ଧ ହେଲେ। ତାଙ୍କ ମତରେ – ଯଦି ଜଗନ୍ନାଥ ସ୍ୱୟଂ ପରମବ୍ରହ୍ମ ତା'ହେଲେ ତାଙ୍କ ଦର୍ଶନ ପରେ ମନୁଷ୍ୟ ସ୍ୱ ଦେହରେ ମୋକ୍ଷ ପାଇବା ଉଚିତ୍। ପୁଣି ଶରୀର ଧାରଣ କରି ଏ ପାପୀ ସଂସାରକୁ ଫେରିବ କିପରି ? ତେଣୁ ଜଗନ୍ନାଥ ବ୍ରହ୍ମ ନୁହନ୍ତି। ତାଙ୍କର ସମସ୍ତ

ଯାତ୍ରା ବିଫଳ ହେଲା ଭାବି ସେ ବାଟମଙ୍ଗଳାଙ୍କୁ ଧ୍ୟାନ କଲେ। ବାଟମଙ୍ଗଳା ତାଙ୍କୁ ସ୍ୱପ୍ନରେ କୁଆଡ଼େ କହିଲେ ଯେ ଜଗନ୍ନାଥ ବାସ୍ତବ ଭାବେ ପରମବ୍ରହ୍ମ ଏବଂ ଭକ୍ତ ତାଙ୍କୁ ଯେପରି ପାଇବାକୁ ଚାହେଁ – ସେପରି ପାଇପାରେ।

ଏହି ସ୍ୱପ୍ନାଦେଶ ପରେ ପଣ୍ଡିତେ ଶଙ୍ଖକ୍ଷେତ୍ରରେ ଉପସ୍ଥିତ ହୁଅନ୍ତି। ମନରେ କାମନା ଜଗନ୍ନାଥଙ୍କୁ ସେ ଗଣପତି ଭାବେ ଦେଖିବେ। ସେଦିନ ସ୍ନାନ ପୂର୍ଣ୍ଣିମା। ଚତୁର୍ଦ୍ଧାମୂର୍ତ୍ତୀ ଦେବସ୍ନାନ ବେଦୀରେ ବିରାଜମାନ। ଗାଣପତ୍ୟ ଭକ୍ତଙ୍କୁ ଜଗନ୍ନାଥ ଗଣପତିଙ୍କ ରୂପରେ ହିଁ ଦେଖା ମିଳିଲେ। ଏବେ ବି ଜଗନ୍ନାଥ ଦେବସ୍ନାନ ବେଦୀରେ ଗଣନାଥ ଭାବେ ବେଶ ହୁଅନ୍ତି –

ଅଧ୍ୟାପକ କଥା ଶେଷ କରି ନିଶ୍ୱାସ ନେଲେ।

– ଗାଣପତ୍ୟ ଭକ୍ତ ଏହି ବେଶର ପ୍ରବର୍ତ୍ତକ ହୋଇପାରନ୍ତି।

ବାବାଜୀ ମହାଶୟଙ୍କ ମନ୍ତବ୍ୟ

– ବୌଦ୍ଧ ଧର୍ମର ହାତୀ ସହ ଯେଉଁ ସଂପର୍କ ଏବଂ ରଥଯାତ୍ରାର ଜାତି ଧର୍ମ ବର୍ଣ୍ଣ ନିର୍ବିଶେଷରେ ଯେଉଁ ଗଣଙ୍କ ସହ ଏକାକାର ହେବାର ପ୍ରକ୍ରିୟା – ଏଥିରୁ ଏହାର ମୂଳାଧାର ଯେ ବୌଦ୍ଧ ଧର୍ମରେ ସନ୍ନିହିତ ନୁହେଁ କିଏ କହିବ। ଏହି ବୌଦ୍ଧ ଧର୍ମ ଧାରଣାକୁ ହିନ୍ଦୁ ପରମ୍ପରାରେ ପରିବେଷଣ କରିବା ପାଇଁ ଏପରି କିମ୍ବଦନ୍ତୀର ସୃଷ୍ଟି କରାଯାଇ ଥାଇପାରେ! ଅଧ୍ୟାପକଙ୍କ ନିକଟରେ ବସି ବହୁ ବେଳୁ ଆଲୋଚନା ଶୁଣୁଥିବା ଅନ୍ୟ ଏକ ଭଦ୍ରବ୍ୟକ୍ତି କହି ଉଠିଲେ।

– ଗୌରବାବୁ! ତମେ ଜଣେ ବିଜ୍ଞାନୀ କୈବର୍ତ୍ତ। ତୁମ ପାଠର ମୌଳିକ ଧର୍ମ ସତ୍ୟାନୁସନ୍ଧାନ ଏବଂ ମୁଁ ତତ୍ତ୍ୱ କହୁନି। ତୁମେ ଠିକ୍ ହୋଇପାର – ଏ କିମ୍ବଦନ୍ତୀ ଭୁଲ୍ ହୋଇପାରେ। ସତ କି ମିଛ ଖୋଜି କାଢୁନ।

– ଏଗୁଡ଼ା ଅଦରକାରୀ। ଶୁଖିଲା କଥାରେ ମୁଣ୍ଡ ଖରାପ କରିବାକୁ ବେଳ କାହିଁ?

ଅଧ୍ୟାପକ ଗୌରବାବୁ ଉତ୍ତର ଦେବା ଆଗରୁ ଯୁବକ ଯୁବତୀଙ୍କ ଭିତରୁ ଜଣେ ବେଖାତିର ଭାବରେ କହିଲା।

– ବନ୍ଧୁ! ଅଦରକାରୀକୁ ଦରକାରରେ ଲଗେଇ ପାରିବା ହିଁ ବାସ୍ତବ ଜୀବନକଳା। ଗୋଟେ ଜାତିର ଐତିହ୍ୟ ଓ ସଂସ୍କୃତି ବିଷୟରେ ଯଦି ସେଇ ଜାତି ପରାଙ୍ମୁଖ ହୁଏ – ତାକୁ ଅନ୍ୟଙ୍କର ପଦଦଳିତ ଦାସ ହେବା ପାଇଁ ପଥ ସୁଗମ କରେ। ନିଜର ସ୍ୱାଭିମାନ ନଥିଲେ – ସେ ଜାତି, ବିଚାର ବୁଦ୍ଧିଶୂନ୍ୟ ମେଣ୍ଢା ପଲରେ ପରିଣତ ହୁଏ। ଆମ ଭିଟାମାଟି ତଳେ କେତେ ଯେ ସୁନାହାଣ୍ଡି ଭର୍ତ୍ତି ହୋଇଅଛି – ତାକୁ କାଢ଼ି ଆଣିବାର ପରିପ୍ରେକ୍ଷୀରେ ବ୍ୟବହାର କରି ପାରିଲେ ସିନା – ନିଜକୁ, ଜାତିକୁ ଏବଂ ଆମ ସଭିଙ୍କର ଭବିଷ୍ୟତକୁ ମହନୀୟ କରିବା! ନୋହିଲେ ତ – 'ତୋର ଦେଖି ମୋର ଡେଇଁଲା ଡାହାଣ ଆଖି!'

ଗୌରବାବୁ ଶାଣିତ ଉତ୍ତର ଦେଲେ।

ବସ୍‌ଟି ଅଠରନଳା ଉପରେ ଚାଲିଯାଇ ଗେଟ୍ ପାଖରେ ଅଟକିଗଲା। ଦି' କରରେ ପୁରୀକୁ ଆସୁଥିବା ଯାତ୍ରୀଙ୍କ ପାଇଁ ବହୁ ଅନୁଷ୍ଠାନର ସ୍ୱାଗତଂ। ଅନ୍ଧଟିଏ ବସ୍ ଭିତରକୁ ପଶିଆସି ଜଣାଣ ଆରମ୍ଭ କରିଛି – 'ତୁମ୍ଭଙ୍କୁ ଜଗନ୍ନାଥ... ଆଜି ମୋ ମନେରଥ...' ପୁରୀର ହାତ ସତେ ଯେପରି ଯାତ୍ରୀର କାନ୍ଧ ଉପରେ – କାନ୍ଧ ଦୋହଲୁଛି। କ'ଣ ଆମ ମନୋରଥ –?

ଅନ୍ଧଟିର ଉଚ୍ଚାରଣରେ ଗୋଟିଏ 'ନମ୍' କୁଆଡୁ ଆସିଯାଉଛି – ଶୃତିକଟୁ ଲାଗୁଛି। କିଏ କିଏ ତା' ହାତକୁ କିଛି ପଇସା ବଢ଼ଉଛନ୍ତି। ପଛକୁ ଘୂରି ଚାହିଁଲେ ଅଠରନଳା। ମନେପଡ଼େ ସେଇ ଲୋକମାନଙ୍କ କଥା, ଯିଏ ଅଠରଟି ସନ୍ତାନ ଏ ମାଟିକୁ ଆଣିପାରିଲେ – ଅଠରନଳା ସହ ସଙ୍ଗାତ ବସୁଥିଲେ। ଓଡ଼ିଆମାନେ ସଂପର୍କ ସ୍ଥାପନ ପାଇଁ କେଡ଼େ ସୁନ୍ଦର ପରିକଳ୍ପନା କରି ନାହାନ୍ତି। ଆଦିବାସୀଙ୍କର ritnal kinship ଓଡ଼ିଆଙ୍କ ମହାପ୍ରସାଦ ମୈତ୍ରୀ, ସଙ୍ଗାତ ଓ ପ୍ରୀତି ବନ୍ଧନରେ ପରିଣତ ହେଇଛି। କଣିକାଏ ମହାପ୍ରସାଦ ପାଇଁ ଜଣେ ଜଣକ ପାଇଁ ଜୀବନ ତ୍ୟାଗ କରି ଦେଇପାରେ – ସବୁ ବିଶ୍ୱାସର କଥା।

ସେ ଅଠରନଳା କରରେ ସ୍ୱାସ୍ଥ୍ୟ ବିଭାଗର ବିଜ୍ଞାପନ – 'ଦୁଇ ବା ତିନୋଟି ସନ୍ତାନ ଯଥେଷ୍ଟ!' ଛୋଟ ସଂସାର ସୁଖୀ ସଂସାର। ହୁଏତ। କିନ୍ତୁ ଯୌଥ ପରିବାରର ଯେଉଁ ଆନନ୍ଦ – ଯେଉଁ ସ୍ୱାର୍ଥତ୍ୟାଗ ଯେଉଁ ବୁଝାମଣା? ନାଁ ଆମେ ଏକେଲା ରହିବୁ – ଏକା ଶିଙ୍ଗରେ ମାଟି ତାଡ଼ିବୁ – ପାଶ୍ଚତ୍ୟ ସଭ୍ୟତାର ସବୁ ଅଗୁଣକୁ ନେଇ ଆପୋଷରେ ଲଢ଼ିବୁ। ଚିନ୍ତାଧାରା ବଦଳିଛି – ଲୋକ ଚରିତ୍ର ବଦଳିଛି – ପୁରୁଣାକୁ ନୂଆ କରି ସଂସ୍କାର କରି ପାରିବୁନି। ଭାଙ୍ଗି ଦେଇଛୁ ପ୍ରତି ମୁହୂର୍ତ୍ତରେ ଭାଙ୍ଗୁଛୁ। ଗଢ଼ିବା କିଛି ଆସେନି। ଏଇ ଅଠରନଳା ପାର ହେଲେ ପୁରୀ। ବଳରାମ ଦାସ ଶରୀରର ଅଠର ତତ୍ତ୍ୱକୁ ଅଠରନଳା କହିଥିବାର ଅନୁମିତ ହୁଏ। ଏଇ ଅଠର ତତ୍ତ୍ୱ ହେଲେ 'ପଞ୍ଚତନ୍ମାତ୍ର', ପଞ୍ଚ ମହାଭୂତ, ପଞ୍ଚ ଇନ୍ଦ୍ରିୟ, ଅହଂକାର, ବୁଦ୍ଧି ଓ ମନ। ହରଣ କରିବା ପାଇଁ ଆସିଥିବା ରାବଣକୁ ନିଜର ବୟସ ୧୮ ବର୍ଷ ଓ ରାମଙ୍କ ବୟସ ୨୫ ବର୍ଷ ବୋଲି ସୀତା କହିଥିଲେ। ଅଭିଷେକ ପ୍ରସ୍ତାବ କାଳରେ ଉକ୍ତ ହୋଇଥିବା ସେମାନଙ୍କ ବୟସ ଏ ବୟସ ସହ ମିଳୁ ନଥିବାରୁ ସାଂଖ୍ୟ ଦର୍ଶନ ଅନୁସାରେ ରାମ ୨୫ ତତ୍ତ୍ୱରୂପୀ ଓ ସୀତା ଅଠର ତତ୍ତ୍ୱରୂପିଣୀ ବୋଲି ପ୍ରାଚୀନ ଟୀକାକାର ଅର୍ଥ କରିଛନ୍ତି। ଏ ଅଠର ତତ୍ତ୍ୱକୁ ଡେଇଁଲେ ଜଣେ ଶ୍ରୀକ୍ଷେତ୍ରରେ ପ୍ରବେଶ କରିବାର ଅଧିକାର ପାଏ ବୋଲି ଲୋକ ମୁଖରେ କଥିତ।

ପଣ୍ଡିତ ବିନାୟକ ମିଶ୍ରଙ୍କର ଏଇ ବ୍ୟାଖ୍ୟା ଭିତରେ ମୁଁ ବୁଡ଼ି ଯାଇଥିଲି। ଖିୟାଲ ହେଲା ଅଧ୍ୟାପକଙ୍କୁ ଗୌରବାବୁଙ୍କର ପ୍ରଶ୍ନରେ –

– ଆମେ ଠିକ୍ ରାସ୍ତାରେ ଚାଲୁଛେ ତ?

ସେମାନେ କ'ଣ କଥାଭାଷା କରୁଥିଲେ ମୁଁ ଶୁଣିନି।

– ସେ କଥା ମହାକାଳ ବିଚାର କରିବ। କିନ୍ତୁ ଆମ ସ୍ୱର ଆମେ ଛାଡ଼ିଯିବା ଉଚିତ୍ –

ତୀର୍ଥ ଯାତ୍ରୀଙ୍କର ଟିକଟ୍ ଦେଇ କଣ୍ଡକ୍ଟର ବସ୍‌କୁ ଫେରି ଆସିଛି। ବସ୍‌ଟି ସହର ଭିତରେ ପଶୁଛି। ସହର ଆରମ୍ଭରେ – କାରାଗାର। କେତେ ଇତିହାସ ଏହାର ମୂକ କାନ୍ଥରେ ନଥିବ! ଜେଲ୍‌କୁ ଚାହୁଁ ଚାହୁଁ ବଡ଼ ଦାଣ୍ଡରେ ଗାଡ଼ି ଅଟକିଛି। ଡାକ୍ତରଖାନା ଛକ। ସେ ହିପ୍‌ପୀଙ୍କ ସଦୃଶ ଯୁବକ ଯୁବତୀଦଳ, ଅଧ୍ୟାପକଦ୍ୱୟ ଓ ମୁଁ ବସ୍‌ରୁ ଓହ୍ଲେଇଲୁ।

– କୋଉଠି ଆଜ୍ଞା ଅଧ୍ୟାପକ ଅଛନ୍ତି ?

ସମ୍ଭ୍ରମତାର ସହ ତାଙ୍କୁ ପଚାରିଲି।

– ଉଁ! ଅଧ୍ୟାପକ ? ମୁଁ ଅଧ୍ୟାପକ। କୋଉଠି କ’ଣ କରୁଥାଇ ପାରେ ପେଟ ପାଇଁ। କିନ୍ତୁ ଏଠିକି ଆସିଗଲେ ମୁଁ – ମୁଁ ନୁହେଁ।

ଆତ୍ମ ବିସ୍ମୃତ ସ୍ୱରରେ ତାଙ୍କର ଉତ୍ତର।

– କ୍ଷମା କରିବେ – ଆପଣଙ୍କ ନାମ . . .

– ଥାଉ ! ଶରଧା ବାଲିର ଗୋଟାଏ ଧୂଳିକଣାର କି ନାମ ଦେବେ ଆପଣ ? ସେ ଅନାମ। ଏ ମାଟିର ପରଶ ପାଉଛନ୍ତି ତ ? ଏ ପବନର ଗନ୍ଧ ଆଘ୍ରାଣ କଲେଣି ? ହୃଦୟଙ୍ଗମ କରନ୍ତୁ . . .

ମୁଁ ହଠାତ୍ ଅନୁଭବ କଲି – ଏ ମାଟି ନୁହେଁ, ପଦ୍ମର ପାଖୁଡ଼ା ଉପରେ ମୁଁ ଠିଆ ହୋଇଛି। ମୋର ଆଉ କିଛି ଦୁଃଖ ନାହିଁ – ଗ୍ଲାନି ନାହିଁ . . . କ୍ଷୋଭ ନାହିଁ। ମତେ ଲାଗୁଥିଲା ଏ ପବନ ମତେ ପାଗଳ କରିଦେବ। ନଡ଼ିଆ ଗଛର ବାହୁଙ୍ଗା ସବୁ ମୁଣ୍ଡ ହଲେଇ ଝାଙ୍କି ହେଉଛନ୍ତି – ମୋ ହୃଦୟ ଭିତରେ। ହୃଦୟ ଭିତରୁ ସହସ୍ର ହାତ ବାହାରି ଆସି ସବୁକୁ କୋଳେଇ ଦବାଲାଗି ଆକୁଳ ହେଉଛନ୍ତି। ମୁଁ ମୋତେ ନିଜକୁ ଖୋଜି ପାଉନି – ମୁଁ ମୋ ନିଜର ନାମ ଓ ଠିକଣା ଭୁଲି ଯାଇଛି। ଦୀନକୃଷ୍ଣ ମନେ ପଡୁଛନ୍ତି। ଏଇ ମାଟିରେ ତାଙ୍କ ପରି ମୁଁ ଗାଇ ଗାଇ ପ୍ରାଣ ଛାଡ଼ନ୍ତିନି।

ବସ୍‌ଟା ଷ୍ଟାଣ୍ଡକୁ ଚାଲିଯାଇଛି – କେଇ ଘଣ୍ଟାର ସହଯାତ୍ରୀ ଆଉ କେହି ନାହାନ୍ତି। ମୁଁ କୁଆଡ଼େ ଯିବି ?

ଶରଧା ବାଲିରେ ଛିଡ଼ା ହେଇଛି । ଶରଧା ବାଲିରୁ ହାତେ ପାଇବା ପାଇଁ ଆତ୍ମା କି ଆକୁଳ ପ୍ରାର୍ଥନା ନ କରିଛି ଯୁଗେ ଯୁଗେ ? ଆତ୍ମା ଯଦି ଏକ ଓ ଅଭିନ୍ନ, ତେବେ ପ୍ରତ୍ୟେକ ଯୁଗରେ ବିଭିନ୍ନ ରୂପରେ କ'ଣ ସେହି ଏକା ଆତ୍ମା ବାରମ୍ବାର ଜନ୍ମ ନେଉଛି – ମଣିଷକୁ ଶ୍ରଦ୍ଧାର ମହନୀୟ ମାଦକତାରେ ମନୁଷ୍ୟତ୍ୱର ସ୍ୱାଦ ଦେବାପାଇଁ ?

'ଶରଧାବାଲି'ରୁ 'ଆନନ୍ଦ ବଜାର' କେତେଦୂର ? ମଝିରେ ବାଇଶି ପାହାଚର ବାଇଶି ତତ୍ତ୍ୱ ପାରି କରିବାକୁ ଯେଉଁ ସାଧନାର ଆବଶ୍ୟକତା – ତା' କେତେ ଜଣଙ୍କର ଅଛି ? ମୋର ତ ମୋଟେ ନାହିଁ । ତେବେ ଶରଧା ବାଲିର କେଇ ରେଣୁ ପବନରେ ଉଡ଼ି – ମୋ ଦେହରେ ବୋଳି ହେଇଯାଇ ଯେଉଁ ଆତ୍ମ-ମାଦକତା ଆଣିଦେଇଛି, ସେ ଧୂଳିକୁ ଆଘ୍ରାଣ କରି ମୁଁ ମୋ ଅନ୍ତନାଡ଼ି ସୁଦ୍ଧା 'ଶ୍ରଦ୍ଧା'କୁ ପହୁଞ୍ଚେଇବାକୁ ଚାହେଁ । ମୋ ରକ୍ତ କଣାରେ ଅଣଚାଷ ବୋହୁ ଶ୍ରଦ୍ଧାର . . .

ଶ୍ରଦ୍ଧାରୁ ଆନନ୍ଦ ଏବଂ ଆନନ୍ଦ ବିନା ମୈତ୍ରୀର ଦର୍ଶନ କାହୁଁ ?

ସବୁ କିଛି ନିଜର ଲାଗୁଛି । ସବୁରି ପ୍ରତି ମମତା ଆସୁଛି । ନିଜକୁ ନିଜେ ଶରଧା କରିବାକୁ ମୁଁ ଆରମ୍ଭ କରିଛି ।

ହଠାତ୍ ମୋ ଦେହରେ କିଏ ଧକ୍କା ଦେଇଗଲା ।

ଶ୍ୟାମଳ ବର୍ଣ୍ଣର ଅଧା ବୟସୀ ମାଇପିଟିଏ ଖିଲି ଖିଲି ହସୁଛି – ଅଳ୍ପ ଦୂରରେ ମୋଠୁ । ମତେ ଧକ୍କାଟାଏ ମାରି ସତେ ଯେପରି ସେ ଆନନ୍ଦର ଉଚ୍ଛୁଳା ସୁଅରେ ଉବୁଟୁବୁ ହେଉଛି । ଦେହରେ ଅସଜଡ଼ା ଲୁଗା । ବ୍ଲାଉସ୍‌ଟି ଚିରା ଓ ସାମ୍ନାର ଦୁଇଟି ବୋତାମ ଖୋଲା । ଶାଢ଼ୀଟି ଯଦିଓ ଚିରା ତଥାପି ସଫା ସୁତୁରା । ମୁଣ୍ଡରେ ଲୁଗା ନାହିଁ ଏବଂ ପୁରୁଷ ପିଲାଙ୍କ ପରି କେଶ । ଲୁଗା କୁଞ୍ଚ କରି ପିନ୍ଧିଛି । ମୁଁ ତାକୁ ଲକ୍ଷ୍ୟ କରୁଥିବାର ଦେଖି ସେ ଏଥର ଅଣ୍ଟା ଭାଙ୍ଗି ଛିଡ଼ା ହେଲା । ତାପରେ ବାମ ହାତର ବିଶି ଆଙ୍ଗୁଳି ଉଠେଇ ଚାପି ରଖିଲା ଦାନ୍ତ ମଝିରେ । ଆଖି ବଡ଼ ଭୋକିଲା ଭୋକିଲା . . .

ମୁଁ ମୋ ସାର୍ଟର ଡାହାଣ କାନ୍ଧ ଓ ବାହୁ ଝାଡ଼ିଲି ।

– ଆରେ ଦେଖରେ ! ଶଶୀ ବାୟାଣୀ କେମିତି ଯାଇ ଟୋକାକୁ ଧକ୍‌କେ ମାଇଲାଣି – ଦେଖିଲୁ !

– ଅଙ୍ଗରମଡ୍ଡା ହେଉଛି, ହ୍ୟାପ !

ମୋ ପାଖରେ ଦୁଇଜଣ ସମବେଦନା ଦେଖେଇ ଛିଡ଼ା ହେଇଗଲେ । ଦି'ଜଣ ଯାକ କିନ୍ତୁ ବାୟାଣୀକୁ ହିଁ ଚାହିଁଛନ୍ତି । ଏଥର ବାୟାଣୀଟି ହାତ ହଲେଇ ଅଭିନୟ କରି ଗାଇବାକୁ ଆରମ୍ଭ କଲା –

କଂସାକୁ ତାଟିଆ ଝାଇଁ
ନୂଆକୁ ଦେଖି ମନ ପଡୁଛି ଡେଇଁ
ଦଣ୍ଡ-ଚଢ଼େୟାରେ ! ପୁରୁଣାରେ ମନ ନାହିଁ !

ନାଚି ନାଚି ଘେରାଏ ଘୂରିଗଲା । ସତେ ବା ଦଣ୍ଡନାଚର ନାୟିକା ।

ଚଢ଼େୟା – ବାଉଁଶ ନଳ
ସତେ ଗଙ୍ଗାପାଣି କେଡ଼େ ଉଜଳ
ଦଣ୍ଡ ଚଢ଼େୟାରେ ! ଗଙ୍ଗାରୁ ବହୁଛି ଜଳ ।

ଲୋକେ ଜମି ଗଲେଣି । ବାୟାଣୀର ଗାଇବାରେ କୌଣସି ରାଗ ବା ତାଳ ଲୟ ନଥିଲେ ମଧ୍ୟ ଗୀତର କିଛି ଆକର୍ଷଣୀ ଶକ୍ତି ଅଛି । କିଏ ହସୁଛି – କିଏ ଖାଲି ଶୁଣୁଛି – କିଏ ମନ୍ତବ୍ୟ କରୁଛି । ବାୟାଣୀର କି ଯାଏ . . . ? ସେ ଦୋହଲୁଛି ।

ଲୋକ ଗହଳିରୁ ବାହାରି ଆସିଲି । ଗହଳିଠୁ ଅଳ୍ପ ଦୂରରେ ଗୋଟିଏ ପୁରୁଣା ରଙ୍ଗ ଛାଡ଼ି ଯାଇଥିବା ସାଇକେଲକୁ ଆଉଜି ଜଣେ ସୌମ୍ୟ, ଶାନ୍ତ ଓ ଭଦ୍ର ଯୁବକ ଗୀତ ଶୁଣୁଛନ୍ତି । ପତଳା ଦେହରେ ତାଙ୍କର ଧଳା ପଞ୍ଜାବି ଓ ପାଇଜାମା । ଧାର ମୁହଁଟି ଉପରେ ଗୋଛାଏ ଅସଂଯତ କେଶ । ତାଙ୍କୁଇ ଏ ବାୟାଣୀ ବିଷୟରେ ପଚାରିବି ବୋଲି ଉଚିତ୍ ମଣିଲି । ତାଙ୍କର ଭଦ୍ରୋଚିତ ଉତ୍ତର –

– ତା' ଘର ଏଇ ପୁରୀରେ ! ସାଇରେ ସାଇରେ ଏମିତି ଗୀତ ବୋଲି ବୁଲେ । ହଠାତ୍ କେବେ କେବେ ରାତି ଅଧରେ ବି ତା' ସ୍ୱର ଶୁଭେ । ଭଲ ଘରର ଝିଅ ଓ ବୋହୂ । ଘର ଲୋକେ କେତେଥର ନେଇ ଘରେ ରଖିଲେଣି – ପୁଣି ପଳେଇଯାଏ ।

– କିନ୍ତୁ ତା'ର ଏଇ ଗୀତ ?

– କଂସା, ତାଟିଆଠୁ ବଡ଼ । କଂସା ତାଟିଆରେ ବାଜିଲେ 'ଝାଇଁ' ଶବ୍ଦ କରେ । ବୟସରେ ବଡ଼ ସ୍ତ୍ରୀ ଥାଉ ଥାଉ ନୂଆ ସ୍ତ୍ରୀ ଆଣିଲେ ଉଭୟଙ୍କ ମଧ୍ୟରେ କଳି ହେବ ହିଁ ହେବ । କୌଣସି ଏକ ପ୍ରସିଦ୍ଧ ତତ୍ତ୍ୱବିତ୍ ଗଙ୍ଗାକୁ ଓ ପକ୍ଷୀକୁ ଆଦିବାସୀ ରମଣୀ ବୋଲି ଅର୍ଥ କରିଛନ୍ତି । ଜଳର ଅର୍ଥ ପ୍ରଜନନ ରସ । ହୁଏତ ଏଇ ଦଣ୍ଡପୂଜାର ଚଢ଼ୟା-ଚଢ଼ୟାଣୀଙ୍କ କଳହ ଗୀତରେ ପାଗଳିନୀଟି ତା' ବ୍ୟକ୍ତିଗତ ଜୀବନର ଅବଚେତନ ଚିନ୍ତାକୁ ଭାଷା

ଦେଉଛି।

ବାୟାଣୀର ଗୀତ ତଥାପି ଚାଲିଛି . . .

'ମୁଗ ଭାଜ ମୁଗ ଭାଜ
ନୂଆ ବରତନୀ ପୁଆଣି ସଜ . . .'

ପାଖରେ ଛିଡ଼ା ହୋଇଥିବା ଆଉଜଣେ ପାକଲା ଗାମୁଛା ପକା ବୃଦ୍ଧ ଆମ ଦୁହିଁଙ୍କୁ ଚାହିଁ ପଚାରିଲେ – ଦଣ୍ଡ-ପୂଜା କ'ଣ ଜାଣିଛଟି ?

ମୁଁ ମୁଣ୍ଡ ହଲେଇ ନ ଜାଣିଥିବାର ସୂଚନା ଦେଲି।

– ଜଣେ ଚଢ଼େୟା ଏକାମ୍ର ବନକୁ ସବୁଦିନ ଚଢ଼େଇ ମାରିବାକୁ ଯାଏ। ଦିନେ କପିଳାସ ପର୍ବତରୁ ଶିବ-ପାର୍ବତୀ ଏକାନ୍ତ ବନ ଉପର ଦେଇ ଉଡ଼ି ଯାଇଥିଲେ। ସେ ଏକଥା ଜାଣିପାରି କେତେଜଣ ଦୁଆରୀ ଜଗେଇ ଦେଲେ, ହେଲେ ଦୁଆରୀଙ୍କୁ କହିଲେ ଯେ – ଚଢ଼େୟା ଆସିଲେ ତାକୁ ପକ୍ଷୀ ମାରିବାକୁ ମନା କରିବ। ଯଦି ମନା ନ ମାନି ଚଢ଼େୟା ପକ୍ଷୀ ମାରେ – ତାହେଲେ ତା' ତୁଲେ କନ୍ଦଳ କରିବନି।

ଚଢ଼େୟା ଯେତେବେଳକୁ ଆସେ; ଆଇଲା। ଦୁଆରୀ ଚଢ଼େଇ ମାରିବାକୁ ବାରଣ କଲେ। ଚଢ଼େୟା ନ ମାନି ଚଢ଼େଇ ମାଇଲା। ମଲା ଚଢ଼େଇ ଗୋଟାଉ ଗୋଟାଉ ତାକୁ ସାପ ଦଂଶିଲା। ତେଣେ ଚଢ଼େୟାଣୀ ଘରେ ବସିଛି ଅପେକ୍ଷାରେ। ଚଢ଼େୟା ଫେରୁନି। ଚଢ଼େୟାଣୀ ମନକୁ ପାପ ଛୁଇଁଲା। ସେ ବନକୁ ଆସି ଦୁଆରୀଙ୍କଠୁ ସବୁ ଶୁଣିଲା। ବହୁ ଖୋଜି ଖୋଜି ଚଢ଼େୟାକୁ ଦେଖିଲା – ହେଲେ ସେତେବେଳକୁ ତାର ଜୀବନ ନାହିଁ ? ମୁଣ୍ଡ କୋଡ଼ି ଚଢ଼େୟାଣୀ କାନ୍ଦି କାନ୍ଦି ବନ ଥରେଇଦେଲା। ସେଇ ବାଟରେ ଶିବ ପାର୍ବତୀ କପିଳାସ ଫେରୁଥିଲେ। କାନ୍ଦଣା ଶୁଣି ପାର୍ବତୀଙ୍କ ଦୟା ହେଲା। ଶିବ ଚଢ଼େୟାକୁ ବଞ୍ଚେଇ ଦେଲେ ଆଉ ପକ୍ଷୀ ନ ମାରିବାକୁ ସାବଧାନ ବି କରିଦେଲେ। ପୂଜା ପାଇଁ ଚାରି ଦିହୁଡ଼ି ଓ ପାଟବେତ ଦେଲେ। ସେଇଦିନୁ ଚଢ଼େୟା ଦଣ୍ଡ ପୂଜା ଆରମ୍ଭ କଲା। ପୂଜା ଗାଁ ଗାଁରେ ବ୍ୟାପିଗଲା। ଦଣ୍ଡପୂଜା ସବୁ ଜାତି କରନ୍ତି। ବେଦ ହେବା ଆଗରୁ ଏ ପୂଜା ଅଛି ପରା !

– ଏ ଗୀତ ତ ନୂଆ ! ତା' ଭାଷାତ ଏବେକାର।

– ମୁଁ ତ ବାବୁ ପଚାଶ ବର୍ଷ ତଳେ ଯୋଉ ଚଢ଼େୟା ଚଢ଼େୟାଣୀ ଗୀତ ଶୁଣିଥିଲି – ତା' ଆଜି ନାହିଁ। କଥା ଏକା ଭାଷା ବଦଳୁଛି। ଆମ ଦକ୍ଷିଣ ଅଞ୍ଚଳରୁ ଦଣ୍ଡପୂଜା ଆରମ୍ଭ ହେଇ ସୁ ଦର୍ଶନ ହେଇଛି ପୁରୀରେ ନା !

– ଆଚ୍ଛା !

– ହଇ ବାବୁ ! ପୋଥି ପଢୁନା। ଦଣ୍ଡକାରଣ୍ୟ କୋଉଠି ?

ମୋ ପାଖରେ ଛିଡ଼ା ହୋଇଥିବା ଯୁବକ ଏଥର ମୁହଁ ଖୋଲିଲେ –

– ରାଜା 'ଦଣ୍ଡ', ଭୃଗୁ-କନ୍ୟା 'ଅରଜ୍ୟ'କୁ ବା ରଜଃସ୍ୱଳା ପ୍ରାପ୍ତ ନୋହିଥିବା କନ୍ୟାକୁ ହରଣ କରିଥିବାରୁ 'ଦଣ୍ଡକାରଣ୍ୟ'ର ଉତ୍ପତ୍ତି ଘଟିଛି ବୋଲି ରାମାୟଣରେ ବର୍ଣ୍ଣନା

ଅଛି। ଦଣ୍ଡପୂଜାର ଆଖ୍ୟାନ ଅନୁସାରେ ଚଢ଼େୟା ଅରଣ୍ୟରେ ପକ୍ଷୀ ବଧ କରୁଥିଲା ବା ଆଦିବାସୀ ରମଣୀ ହରଣ କରୁଥିଲା। ଦଣ୍ଡପୂଜାକୁ ବଙ୍ଗାରେ 'ଚଡ଼କ ପୂଜା' କହନ୍ତି ଏବଂ ଓଡ଼ିଆରେ ବଜ୍ରକୁ 'ଚଡ଼କ' କହନ୍ତି। ପୂର୍ବ ଭାରତୀୟ ସଂସ୍କୃତି ଯେ ଏକ ସମୟରେ ଗୋଟିଏ ଥିଲା ଏଥିରେ ତ ଆଉ ଦ୍ୱିରୁକ୍ତି ନାହିଁ। ବେଦରେ ଏବଂ ବୌଦ୍ଧଗାନ ଓ ଦୋହାରେ ପ୍ରଜନନ ବିନ୍ଦୁ ଅର୍ଥରେ ବଜ୍ର ଶବ୍ଦ ବ୍ୟବହୃତ ହୋଇଛି। ଇନ୍ଦ୍ରିୟ ଅପବ୍ୟବହାର ବନ୍ଦ କରିବା ପାଇଁ ଏବଂ ଉଦ୍ଧତ ତାରୁଣ୍ୟକୁ ଶୃଙ୍ଖଳିତ କରିବା ପାଇଁ ଦଣ୍ଡପୂଜା ପ୍ରଚଳିତ ହୋଇ ଥାଇପାରେ।

– ଆପଣ କ'ଣ କରନ୍ତି ଆଜ୍ଞା!

ମୁଁ ପ୍ରଶ୍ନ କଲି।

– ମତେ ଜ୍ଞାନୀ ଭାବନ୍ତୁନି। ମୁଁ କେବଳ ଜଣେ ପଣ୍ଡିତଙ୍କୁ ଉଦ୍ଧୃତ କଲି।

– କ୍ଷମା କରିବେ। ମୁଁ ଆଉ ଜଣେ ଭଦ୍ରବ୍ୟକ୍ତିଙ୍କ ନାମ ପଚାରି ଉତ୍ତର ପାଇଛି – ଅନାମ?

ତେଣୁ ପ୍ରଶ୍ନ କରିବାକୁ ଭୟ ଲାଗୁଛି।

– ଓଃ ଆପଣ ତା'ହେଲେ ଅନାମ ଗାଣ୍ଡୁଙ୍କ ଭିତରୁ ଜଣକୁ ଭେଟି ସାରିଲେଣି।

– ସେ କଅଣ?

– ଆପଣ କ'ଣ ପୁରୀରେ ନୂଆ?

– ଆଜ୍ଞା ହଁ। ଏଇ ତ ବସ୍‌ରୁ ଓହ୍ଲେଇଛି।

ଭଦ୍ରବ୍ୟକ୍ତି ମୋର ଏପଟ ସେପଟକୁ ଚାହିଁଲେ। ମୋର ଆସବାବପତ୍ର ମୋର ଯାହା ପିନ୍ଧା ଲୁଗା।

ଜନପଥର କୋଳାହଳରେ ଗର୍ବ, ଅହଙ୍କାର, ଆତ୍ମ ବଡ଼ିମାର କୁହାଟ ଭିତରେ ପ୍ରଚାରର, ଆତ୍ମ ବିଜ୍ଞାପନର ଢ଼େର ମାଡ଼ରେ ମନ୍ଦିର ଓ ବାବାଙ୍କର ଘଣ୍ଟ ଧ୍ୱନି ଭିତରେ ସବୁଠି ଏକା ଏକା ଲାଗିଛି। ସୁନା, କୋଠା, ଜମି, ବ୍ୟାଙ୍କ ବାଲାନ୍‌ସ, ପ୍ରଭୁତ୍ୱ ଅଥବା ପ୍ରଭୁଙ୍କ ରୋଶନ୍‌ଦାରୀରେ ମସ୍‌ଗୁଲ ଏ ଦୁନିଆ ପାଇଁ – ମୁଁ ଏକ ଅଦରକାରୀ ମଣିଷ। ମଣିଷକୁ ମିଣିଷର ଇଜ୍ଜତ କୋଉଠି ମିଳେ ଖୋଜିବାକୁ ବାହାରି ଆଜି ଶରଧା ବାଲିରେ ଛିଡ଼ା ହେଇଛି . . .

– ଓଡ଼ିଆ ଜନ ଜୀବନ ଓ ଜଗନ୍ନାଥ ସଂସ୍କୃତିର Re-Valuation କରି ଅନାମ ମାନେ ମାନବ ଜାତି ପାଇଁ ଏକ ମୈତ୍ରୀବାଦୀ ସମାଜର ସ୍ୱପ୍ନ ଦେଖୁଛନ୍ତି। ସତସ୍ତରୀ ଜଣ ଗୋଷ୍ଠୀ ନିରପେକ୍ଷ ରାଷ୍ଟ୍ରର ଏକତାର ବନ୍ଧନ ପାଇଁ ଯେଉଁ ସୂତ୍ର ଆବଶ୍ୟକ ତା'ର ସନ୍ଧାନ କରୁଛନ୍ତି। ଯିବେ ତାଙ୍କ ଆଡ଼୍‌ଡାକୁ?

– ଆପଣ ବି କ'ଣ ଅନାମ?

– କେହି ହେଇନୁ। ଏବେ ବି ନାମର ମମତା ମତେ ଆଚ୍ଛନ୍ନ କରେ। କେବଳ

ସାଙ୍ଗିଆ ଛାଡ଼ି ଦେଇଛୁ। ଜାତିରେ ବୋଧେ ମୁଁ ଯବନ। ସବୁ ଅନାମ ବି ଯବନ। ମତେ ଲୋକେ ଅଧ୍ୟାପକ ବିଶ୍ୱ ରଞ୍ଜନ ବୋଲି ଜାଣନ୍ତି।

ଜାତିରେ ମୁଁ ଯବନ! ମୋ କାନ ପାଖରେ ହଠାତ୍ ସତେ ଯେପରି କିଏ ଗାଇ ଉଠିଲେ –

'ଆହେ ନୀଳ ଶଇଳ ପ୍ରବଳ ମତ୍ତ ବାରଣ
ମୋ ଆରତ ନଳିନୀ ବନକୁ କର ଦଳନ...'

ଯେବେ ବି ଏ ଗୀତ ଶୁଣିଛି – ମୁଁ ଆପେ ଆପେ ସେ ସ୍ୱର ସହ ସ୍ୱର ମିଳେଇ ଗାଇ ଉଠିଛି। ଜଗନ୍ନାଥଙ୍କ ଯବନ ଭକ୍ତ ସାଲବେଗର ଗୀତ। ବସ୍‌ରେ ଆସିଲାବେଳେ ସେ ମୁସଲମାନ କଣ୍ଡକ୍ଟର 'ବାଟମଙ୍ଗଳା'ଙ୍କ ପାଖରେ ସିନ୍ଦୂର ପାଇଁ ପଇସା ଦେବାର ମୁଁ ଦେଖିଛି। ସେ ବି ସାଲବେଗଙ୍କ ଗୀତ ଗାଏ। ହରିଦାସ ଯବନର ମୃତ ଶରୀରକୁ ଚୈତନ୍ୟ ହାତରେ ଉଠେଇ ତା' ଶୁଦ୍ଧି ପାଇଁ ବଡ଼ଦାଣ୍ଡରେ ଭିକ୍ଷା କରିଥିଲେ। ଏବେ ବି ଗୌଡ଼ୀୟ ବୈଷ୍ଣବମାନେ ଭାଦ୍ରବ ମାସ ଶୁକ୍ଳ ଚତୁର୍ଦ୍ଦଶୀ ଦିନ ବଡ଼ଦାଣ୍ଡରେ ଭିକ୍ଷା କରି ତାଙ୍କ ପାଇଁ ମଉଛା କରନ୍ତି। ଜଗନ୍ନାଥଙ୍କ ଭିତର ବେଢ଼ାରେ ସତ୍ୟନାରାୟଣଙ୍କ ମନ୍ଦିରକୁ ପୂଜା ପାଇଁ ଓଡ଼ିଶାର ଧର୍ମାନ୍ତରିତ ମୁସଲମାନମାନେ ଯିବା ଦୃଷ୍ଟାନ୍ତ ଅଛି। ଇଂରେଜମାନେ ଏ ପ୍ରଥା ବନ୍ଦ କରେଇଛନ୍ତି। ରାଣୀ ଭିକ୍ଟୋରିଆଙ୍କ ସମୟରୁ ସିଂହ ଦ୍ୱାରରେ ଏକ ନୋଟିସ୍ ଏଇ ମର୍ମରେ ଦିଆଗଲା – କେବଳ ହିନ୍ଦୁଙ୍କ ଛଡ଼ା ଅନ୍ୟ କେହି ଏ ମନ୍ଦିରରେ ପ୍ରବେଶ କରିପାରିବେ ନାହିଁ।

ବିଭାଜନ ନ କଲେ ଶାସନ କରନ୍ତେ କିପରି? ଆମେ ବି ବୋକା। ଜଗତରନାଥଙ୍କୁ ହିନ୍ଦୁଙ୍କର ନାଥରେ ପରିଣତ କରେଇ ଦେଇଛୁ। କାଳର କରାଳ କବଳରେ ସଲୋମନ୍‌ର ମନ୍ଦିର କୁଆଡ଼େ ହଜି ଯାଇଛି। ସୁନାମାଢ଼ିର ଲୋଭରେ ସୋମନାଥ ମନ୍ଦିରର ମଥା ଫାଟିଛି। ସବୁ ସୁନା ନେଇ ବି ମାମୁଦ ଗଜନୀ ଯାଇ ପାରିନି। ପୋତା ସୁନାର ସନ୍ଧାନ ଏବେ ଚାଲିଛି। କିନ୍ତୁ କଳାପାହାଡ଼ର ଆକ୍ରମଣ କ'ଣ ଜଗନ୍ନାଥକୁ ନେଇଯାଇ ପାରିଛି? ଓଡ଼ିଆଏ ଜଗନ୍ନାଥ ସଂସ୍କୃତିର ଆତ୍ମାକୁ ଗୋପ୍ୟ କରିଦେଲେ – ପୁଣି ବାହାରିଲା। ମନ୍ଦିର ଯେମିତି ସେମିତି ଅଛି।

– କ'ଣ ଚିନ୍ତା କରୁଛନ୍ତି?

– ଉଁ . . .

ମୁଁ ମୋ ଚିନ୍ତାରାଜ୍ୟରୁ ଫେରିଲି।

– ଆପଣଙ୍କ ଘର କୋଉଠି?

– ମୋ ଘର କାହିଁ? ବାପାଙ୍କ ଘର ତଳମାଳି ସାହିରେ।

– ବୋଉ ନାହାନ୍ତି ବୋଧେ!

– ଆପଣ କିପରି ଜାଣିଲେ?

— ବୋଉ ଥିଲେ ଆପଣ 'ବାପାଙ୍କ ଘର' ନକହି ଆମ ଘର କହିଥା'ନ୍ତେ।

ଯୁବକଙ୍କ ମୁଖମଣ୍ଡଳରେ କାରୁଣ୍ୟ ତଥା ବିଷାଦର ତମସା ବିଛେଇ ହେଇଗଲା। କେଉଁ ଏକ ଦୁଃଖଦ ସ୍ମୃତୀରେ ସତେ ବା ତାଙ୍କର ମଥା ନଇଁଗଲା . . .

— କ୍ଷମା କରିବେ! ଆପଣଙ୍କୁ ଦୁଃଖୀ କଲି . . .

— ନାଁ-ନାଁ-ସେ କିଛି ନୁହେଁ।

ବିଶ୍ୱରଞ୍ଜନ କଥା ଆଡ଼େଇବାର ଚେଷ୍ଟା କରୁଥିଲେ।

— ସାଲବେଗଙ୍କ ସମାଧୀ ପରା ବଡ଼ ଦାଣ୍ଡରେ?

ଅବସ୍ଥାକୁ ହାଲୁକା କରିବା ପାଇଁ ମୋର ପ୍ରୟାସ।

— ହଁ! ଯିବେ?

ଚାଲ ଚାଲ ହେଇ ଆମେ ଆଗେଇଲୁ ସିଂହଦ୍ୱାର ଦିଗରେ। ବିଶ୍ୱରଞ୍ଜନ ମତେ ଆଙ୍ଗୁଠି ଦେଖେଇ ନିର୍ଦ୍ଦେଶ କରୁଥିଲେ ଏକ ଲାଲ ରଙ୍ଗର ମଣ୍ଡପକୁ —

— ହେଇ ଦିଶୁଛି ସାଲବେଗଙ୍କର ସମାଧୀ। ସେଇ ଛକଟାକୁ ବଳଗଣ୍ଡି କହନ୍ତି। ଏକ ସମୟରେ ଏଠି ଗୋଟେ ବିରାଟ ଗଣ୍ଡ ଥିଲା। ଆଜିକାଲି ଯେଉଁଠି ବଡ଼ଶଙ୍ଖ ସେଠା ପର୍ଯ୍ୟନ୍ତ କୁଆଡ଼େ ସେ ନଈର ଅପର କୂଳ ଥିଲା। ସେଇ ନଈର ଏଠା ବାଙ୍କିମୁହାଣ ଦେଇ ସମୁଦ୍ରରେ ପଡ଼ିଥିଲା। ରଥ ସମୟରେ ବଳଗଣ୍ଡି ପର୍ଯ୍ୟନ୍ତ ତିନୋଟି ରଥ — ପୁଣି ବଡ଼ଶଙ୍ଖ ଆରପଟେ ତିନୋଟି ରଥ ହେଉଥିଲା। ମଝିରେ ଥିଲା ଚାପ — ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କୁ ନଦୀ ପାର କରେଇବା ଲାଗି।

— ଯେ କେବକାର ଘଟଣା?

— ଠିକ୍ ଭାବେ କହି ପାରିବିନି। ମୁଁ ଲୋକ ମୁଖରୁ ଶୁଣିଛି।

ଦାଣ୍ଡର କରରୁ ଗୋଟିଏ ରିକ୍ସା ଆମ ଆଡ଼େ ଆସୁଛି। ଧୋତି ଓ ଧଳା ପଞ୍ଜାବି ପରିହିତ ଜଣେ ଦୀର୍ଘକାୟ ସୁସ୍ଥ ସବଳ ଏବଂ ସୁନ୍ଦର ସଠାମ ପୁରୁଷ ରିକ୍ସାରେ। ବିଶ୍ୱରଞ୍ଜନ ତାଙ୍କୁ ନମସ୍କାର କଲେ।

— ଆଜି ସଂଧ୍ୟାରେ ବିଶ୍ୱରଞ୍ଜନ! ଜଗନ୍ନାଥବଲ୍ଲଭଠି ସଭା — ନିଶ୍ଚୟ ଆସିବ।

କଣ୍ଠ ବଡ଼ ଗଦ୍ ଗଦ୍ — ଭାଷା ତାଙ୍କ କଣ୍ଠରୁ ବାହାରିଲେ ବୋହିଗଲା ପରି ଲାଗେ।

— ହଁ ସାର୍!

ରିକ୍ସାଟି ଆମକୁ ଅତିକ୍ରମ କରି ଚାଲିଗଲା।

— କିଏ?

— ଅଧ୍ୟାପକ ରାୟ! ଅବସର ପ୍ରାପ୍ତି ପରେ କ୍ଷେତ୍ରବାସ ଓ ଚିନ୍ତନ। ବହୁ ଗଳ୍ପ, କବିତା ତଥା ସାହିତ୍ୟିକ କୃତିର ସ୍ରଷ୍ଟା। ତାଙ୍କର 'କଳିଙ୍ଗଶିଳ୍ପୀ' ଛାତ୍ର ଜୀବନରେ ପଢ଼ିଥିବେ!

'କଳିଙ୍ଗ' — ଏଇ ଶବ୍ଦଟି ବହୁ କିଛି ମନେ ପକେଇ ଦିଏ। 'କଳିଙ୍ଗର ଜନ୍ମ

ବୃତ୍ତାନ୍ତ' ଯାହା ଜାଣେ ତା' ହେଲା – ଦୀର୍ଘତମା ଋଷି ଏକଦା ଯମଗର୍ତ୍ତ ମଣ୍ଡଳରୁ ବୈତରଣୀରେ ଭାସି ଆସି ବଳିର ରାଜ୍ୟରେ ଲାଗିଥିଲେ। ସେହି ଋଷିଙ୍କ ଔରସରୁ ବଳିର ସ୍ତ୍ରୀ ସୁଦେଷ୍ଣାଙ୍କ ଗର୍ଭରୁ ଅଙ୍ଗ, ବଙ୍ଗ, କଳିଙ୍ଗ, ପୁଣ୍ଡ୍ର ଓ ସୁହ୍ମ ଏବଂ ସୁଦେଷ୍ଣାଙ୍କ ଦାସୀ ଗର୍ଭରୁ କକ୍ଷିବତ୍ – ଏହିପରି ଛ ପୁତ୍ର ଜାତ ହୋଇଥିଲେ। ସୁଦେଷ୍ଣାଙ୍କ ପୁଅମାନେ ନିଜ ନିଜ ନାମ ଅନୁସାରେ ଗୋଟିଏ ଗୋଟିଏ ରାଜ୍ୟ ସ୍ଥାପନ କଲେ। ଦୀର୍ଘତମା ତାଙ୍କ ରଚିତ ସୂକ୍ତରେ କୁହନ୍ତି – କେବଳ ପ୍ରେମରୁ ସୃଷ୍ଟି ଜାତ। କକ୍ଷିବତ୍ କଳିଙ୍ଗମାନଙ୍କ ସଙ୍ଗରେ ରହି ଉଷାସୂକ୍ତ ରଚନା କରିଥିଲେ।

ଚିନ୍ତା କରୁ କରୁ ହଠାତ୍ ମୁଁ କହି ପକେଇଲି –

– କଳି ବା ଫୁଲକଢ଼ିକୁ ଗମନ କରିବା 'କଳିଙ୍ଗ' ନାମର ଅର୍ଥ ହୋଇପାରେ। ରଜୋବତୀ ନୋହିଥିବା ବାଳିକାଙ୍କ ସଙ୍ଗେ ଯେଉଁମାନେ ରତିକ୍ରୀଡ଼ା କଲେ ସେମାନେ 'କଳିଙ୍ଗ' ନାମରେ ଅଭିହିତ ହେଲେ ବୋଲି ପଣ୍ଡିତ ବିନାୟକ ମିଶ୍ରଙ୍କ ମତ।

– 'ସତ କି ମିଛ କିଏ ଜାଣେ? ବିଶ୍ୱରଞ୍ଜନଙ୍କ ଉତ୍ତର – 'ଗବେଷଣା ତ ଆମ ଜାତିରେ ଘଟଣାକୁ ଖୋଲିବା ପାଇଁ ନୁହେ ବରଂ ସବୁ କିଛି ମୁଦି ଦେବାରେହିଁ ଆମର ବାହାଦୂରୀ। ଅଧ୍ୟାପକ ରାୟ ତାଙ୍କ ସାରା ଜୀବନ ଚିନ୍ତା କରି 'କଳିଙ୍ଗ'କୁ କେତେ କ'ଣ ବୁଝିଲେଣି – ତା' ବର୍ତ୍ତମାନ ସୁଦ୍ଧା ତାଙ୍କ ଲେଖାରୁ ମୁଁ ବୁଝିନି।

– କଳିଙ୍ଗ ଯୁଦ୍ଧର କଥା ଶୁଣେଇ ସଭାରେ ବାଗାଡ଼ମ୍ବରର ବାହୁଲ୍ୟରେ ବାହା ବା ନେବା ଏବଂ କଳିଙ୍ଗଶିଳ୍ପୀର ଅତୀତକୁ ବର୍ତ୍ତମାନରେ ପରଖି, ଭବିଷ୍ୟତର କାର୍ଯ୍ୟରେ ଲଗେଇ ପାରିବା ପାଇଁ ପଥ ଉନ୍ମୋଚନ କରିବା କ'ଣ ଏକା କଥା?

– ସେମାନେ ଏକ ସ୍ୱପ୍ନ ବିଳାସୀ ଯୁଗର। ପାଟ, କୁଣ୍ଡଳ ଓ ଉପରିସ୍ଥଙ୍କ ଦୁଇପଦିଆ ସମ୍ମାନ ସୂଚକ ବାକ୍ୟର ଲୋଭ ଓ ମୋହ ତାଙ୍କ generation ଛାଡ଼ି ପାରିନି। ସେମାନେ କେହି Idea-Possessed ନଥିଲେ ତ!

ଆମେ ସାଲବେଗଙ୍କ ସମାଧିର ନିକଟସ୍ଥ ହୋଇଥିଲୁ। ପୁରୀକୁ କେତେ ସାଧୁ, ସନ୍ଥ, ଧର୍ମ ପ୍ରଚାରକ ଯୁଗେ ଯୁଗେ ଆସିଛନ୍ତି। ସମସ୍ତେ ମଠ କରିଛନ୍ତି। କିନ୍ତୁ ବଡ଼ଦାଣ୍ଡରେ କାହିଁ କାହାରି ସ୍ମୃତି ଚିହ୍ନ ନାହିଁ। ଅଥଚ ଏକ ଯବନର ସମାଧି ପାଇଁ କାହିଁ ବିରୋଧ ତ କରିନି।

ଛୋଟିଆ ମଣ୍ଡପଟିଏ। ବଡ଼ଦାଣ୍ଡ ପଟକୁ ପାଚେରୀ ବୁଲିଛି। ସିମେଣ୍ଟ କରା ଚଉତରା ଉପରେ ଗୁଡ଼ାଏ ଗୋବର ନେଦା ଓ ଦି'ଟା ମେଢ଼ିଆ ଗାଈ ଶୋଇ କରି ପାକୁଳି କରୁଛନ୍ତି। ସମାଧିଟି ଟିକେ ଉଚ୍ଚ ଓ ତା' ଉପରେ ଏକ ଛାତ ଥିବା ମଣ୍ଡପ – ଦୁଆର ଖୋଲା। ମଣ୍ଡପର ପଛ ପଟକୁ ଦି'ଜଣ ଭିକାରୀ ବାବାଜୀ, ଗଞ୍ଜେଇ ଟାଣୁଛନ୍ତି। ଜଣେ ଗୀତ ଗାଉଛି – ହାତରେ ତା'ର ଗୋଟେ ଖଜଣୀ –

ସଖୀ !

କୁଞ୍ଜବନେ ବଂଶୀ କେ ବଜାଇଲା ଗୋ
ଶୁଷ୍କ ତରୁମାନେ ଥିଲେ ଧ୍ୱନି ଶୁଣି ପଲ୍ଲବିଲେ
ପବନ ସ୍ତକିତ ହୋଇ ରହିଲା ଗୋ,
ପାଷାଣ ହୁଅଇ ପାଣି ପବନ ଟେକେ ଉଜାଣି
ଜଳ କେଳି ମୀନ କୂଳେ ରହିଲା ଗୋ !

ବିଶ୍ୱରଞ୍ଜନଙ୍କ ପ୍ରଶ୍ନ ?

– ସାଲବେଗଙ୍କର ବାବୁ ! ଆମେ ଗାଇ ଭିକ୍ଷା କରୁ ।

– ତାଙ୍କର ଆଉ କେତେ ଗୀତ ଅଛି ?

– ବହୁତ ଅଛି ଆଜ୍ଞା ! ହେଲେ ଆମର ତ ଆଉ ମଠ ନାହିଁ କି ପୋଥି ନାହିଁ। ମୋ ଗୁରୁ କିଛି ରଖିଥିଲେ – ଜଣେ ବାବୁ କିଣି ନେଇଗଲା। ପଣ୍ଡା, ପଣ୍ଡିତଙ୍କ ଡରରେ ପରା ସାଲବେଗଙ୍କ ଶିଷ୍ୟମାନେ ଗୋପ୍ୟ ହେଇଗଲେ।

– କାହିଁକି ?

– ସେ ବାବୁ ବହୁତ କଥା। ଜଣେ ବିଧବା ବ୍ରାହ୍ମଣୀ, ମୁସଲମାନ ସେନାପତି ଲାଲବେଗଙ୍କ ପ୍ରେମରେ ପଡ଼ି ଧର୍ମ ଛାଡ଼ି ତାଙ୍କର ସ୍ତ୍ରୀ ହେଲେ। ଏହି ଦୁଇଙ୍କର ପୁଅଟିଏ ହେଲା। ପିଲାଟି ଭାରି ରୋଗିଣା ହୋଇଥାଏ। ଲାଲବେଗ ସେତେବେଳେ କଟକରେ ସୁବାଦାର। ତାଙ୍କ ଘର ପାଖରେ ଜଗନ୍ନାଥଙ୍କ ଭଜନ କୀର୍ତ୍ତନ ମଣ୍ଡଳୀଟିଏ ଥାଏ। ରୋଗିଣା ପିଲାଟି ଯେତେବେଳେ ଚାଲିବା ବୁଲିବାର ହେଲା – ସେ ଯାଇ ସେଇ ଭଜନ ମଣ୍ଡଳୀ ପାଖରେ ବସେ। ଦେଖାଗଲା ପିଲାଟି ଧୀରେ ଧୀରେ ଭଲ ହେଉଛି। ଏକଥା କିନ୍ତୁ ଲାଲବେଗ ପସନ୍ଦ କରୁ ନଥିଲେ। ତାକୁ ଜବରଦସ୍ତ ସେ ଘରେ ବନ୍ଦ କରି ରଖିଲେ। ପୁଣି ପିଲାଟି ରୋଗରେ ପଡ଼ିଲା। ଏଥର ମା’ ତାକୁ ଭଜନ କୀର୍ତ୍ତନ ପାଖକୁ ଲୁଚେଇ ଲୁଚେଇ ଛାଡ଼ିଲେ। ପିଲାଟି ଭଲ ହେଇ ଆସିଲା। ସେ ନିଜେ ମଧ୍ୟ ସେଠି ଭଜନ କରିବାକୁ ଆରମ୍ଭ କଲା। ଏଥର ଲାଲବେଗ ଆଉ ସହି ପାରିଲେନି। ସେ କୀର୍ତ୍ତନିଆ ଦଳୁ ସେଠୁ ମାରି ତଡ଼େଇ ଦେଲେ। କିଛି ବର୍ଷ ପରେ ସେ ପିଲାଟି ଘର ଛାଡ଼ି ତ୍ୟାଗୀ ହୋଇଗଲା। ପିଲାବେଳୁ ଯୋଉ ଛାପ ତା’ ମୁଣ୍ଡରେ ଥିଲା ସେଥିରେ ସେ ବହୁ ଭଜନ, ସଙ୍ଗୀତ ହେରିକା ଲେଖିଥିଲା। ତାକୁଇ ନେଇ ସେ ପୁରୀ ଚାଲି ଆସିଲା। ବଳଗଣ୍ଡି ପାଖରେ ଗୋଟେ ଛତା ପକେଇ ସେ ତା’ରି ତଳେ ଭଜନ କୀର୍ତ୍ତ ଆରମ୍ଭ କଲା।

– ଛତା ତଳେ କେତେଜଣ ବସୁଥିଲେ ?

– ତମେ ବାପ ଜାଣିନ। ପୁରୀରେ ଛତା ପକେଇ ଆଗେ ବାବାମାନେ ଏମିତି ବଡ଼ଦାଣ୍ଡରେ ବସୁଥିଲେ। ସେଇ ଛତା ତଳେ ଧୂନି ହେଉଥିଲା, ଯଜ୍ଞ ହେଉଥିଲା, ସଂକୀର୍ତ୍ତନ ହେଉଥିଲା। ଏବେ ବି ପୁରୀରେ ଦୁଇଟା ମଠ ଅଛି ଯାହାର ନାମ ‘ବଡ଼ ଛତା

ମଠ' ଓ 'ସାନ ଛତା ମଠ'। ଛତା ତାଳ ବାହୁଙ୍ଗା ଓ ତାଳ ପତ୍ରରେ ତିଆରି ହଉଥିଲା। ମଝିରେ ମଝିରେ ଖୁମ୍ବ ସବୁ ଥିଲା। ସିଂହ ଦୁଆର ପାଖରେ ଗୋଟେ ବହୁତ ବଡ଼ ଛତା ମୋ ଗୁରୁ ଦେଖିଛନ୍ତି। ତାରି ସାଧୁମାନେ ବଡ଼ ଛତା ମଠରେ ଆଜିକାଲି ରହନ୍ତି।

– ହଉ! ତା'ପରେ କ'ଣ ହେଲା?

– ବହୁ ଶିଷ୍ୟ ଶିଷ୍ୟା ହେଲେ – ବହୁ ଭକ୍ତ ରୁଣ୍ଡ ହେଲେ। ଭକ୍ତ ସାଲବେଗ ବୋଲି ଚାରିଆଡ଼େ ହୁରି ପଡ଼ିଲା। କିନ୍ତୁ ବାବୁ! ଆମ ଓଡ଼ିଆଙ୍କ ଗୋଡ଼ଟଣା ପ୍ରକୃତି ତ ଜାଣନ୍ତି। ପଣ୍ଡା, ପଣ୍ଡିତ, ଧର୍ମ ଗୁରୁ, ବ୍ରାହ୍ମଣ ସଭିଙ୍କର ହିଂସା ହେଲା। ସେମାନେ ସହି ପାରିଲେନି – ଗୋଟେ ପଠାଣ ଟୋକାର ଏଡ଼େ ବହପ? ସାଲବେଗଙ୍କ ଉପରେ ବହୁ ଅତ୍ୟାଚାର, ଅନ୍ୟାୟ କରା ହେଲା। ଶେଷକୁ ତାଙ୍କୁ ସେଠୁ ତଡ଼ି ଦେଲେ। ସେଥର କିନ୍ତୁ ରଥ ଆଉ ବଳଗଣ୍ଡିରୁ ଗଡ଼ିଲାନି। ଜଗନ୍ନାଥଙ୍କ ପାଖରେ ଦଇତାଏ ଅଧିଆ ପଡ଼ିଲେ। ଜଗନ୍ନାଥେ ସପନେଇଲେ – ସାଲବେଗ ବିନା ରଥ ଚାଲିବନି।

ବାବାଜୀଟିର କଥା ସହ ମୁଁ କେଉଁ ଦୂରନ୍ତ ଅତୀତ ଭିତରକୁ ଭାସି ଯାଉଥିଲି – ଓଡ଼ିଆ ଜାତିର ବୋଧେ ଏଇଟା ହିଁ ଗର୍ବ, ଅହଙ୍କାର ଏବଂ ଭକ୍ତ – ବଳରାମ ଦାସ ଠିକ୍ ଏଇପରି ଏକ ଅବସ୍ଥାରେ ହୁଏତ ଗାଇ ଉଠିଥିଲା ଯେତେବେଳେ ରଥରୁ ତାକୁ ଧକ୍କା ଦେଇ ବାହାର କରା ହୋଇଥିଲା –

ନନ୍ଦିଘୋଷ ରଥୁଁ ଦେଲୁ ଘଉଡ଼ି
କେ ଓଟାରିବ ତୋ ରଥ ଦଉଡ଼ି
ନାଥ ତୁ ମୋତେ ନେଲେ ସିନା ଯିବୁ
ନୋହିଲେ ସେହିଠାରେ ରହିଥିବୁ
ଧରିଛି ଚିତ୍ତେ ତୁ ଯିବୁ କେମନ୍ତେ
ଦାସ ବଳରାମ ଭରସି ତୋତେ!

– ତା'ପରେ? ବିଶ୍ୱରଞ୍ଜନଙ୍କ ପ୍ରଶ୍ନ।

– ସାଲବେଗଙ୍କୁ ଅଣାଗଲା। ରାଜା ତାଙ୍କୁ ଭକ୍ତ ବୋଲି ଘୋଷଣା କଲେ – ସେ ଜଗନ୍ନାଥଙ୍କୁ ଛୁଇଁଲେ – ତା'ପରେ ରଥ ଚାଲିଲା –

ଗଞ୍ଜେଇ ଟାଣୁଥିବା ବାବାଜୀ ତାଙ୍କ ନଳୀଟିକୁ ଗଡୁଥିବା ବାବାଜୀଙ୍କ ହାତକୁ ବଢ଼େଇ ଦଉ ଦଉ ପଚାରିଲେ –

– ହେଲା ଯେ! ଆଜ୍ଞା ଏ ଦୟିତାମାନଙ୍କୁ ଏତେ ସପନ ହୁଏ କାହିଁକି?

– ହବନି? ଦୟିତା ପରା ଜଗନ୍ନାଥଙ୍କ କୁଟୁମ୍ବ। ନବକଳେବର ବେଳେ ଜଗନ୍ନାଥଙ୍କ ପାଇଁ ସେମାନେ ପରା ଶୁଦ୍ଧି ହୁଅନ୍ତି!

ମୁଁ ବିଶ୍ୱରଞ୍ଜନଙ୍କୁ ଚାହିଁଲି।

– ଦୟିତାମାନେ ଜଗନ୍ନାଥଙ୍କ ଭକ୍ତର ଭକ୍ତି ପ୍ରମାଣିତ କରିବା ପାଇଁ ଯୁଗେ ଯୁଗେ

ସ୍ୱପ୍ନ ଦେଖିବାର ଏକ ଅଦ୍ଭୁତ ପ୍ରଣାଳୀ ମାଧ୍ୟମରେ ତାଙ୍କର ଦାୟିତ୍ୱ ଗ୍ରହଣ କରିଛନ୍ତି ବୋଲି ମୁଁ ବିଶ୍ୱାସ କରେ। ଦୟିତାମାନେ ନଥିଲେ ଜଗନ୍ନାଥ ପତିତ, ଅଚ୍ଛବ, ଯବନ ବା ଶବରୀ ସଭ୍ୟତାକୁ ପରିହାର କରି – ଗଣଦେବତା ନହୋଇ, କେବେଠୁ ଖଟୁଲିର ଅସ୍ପୃଶ୍ୟ ଦେବତାରେ ପରିଣତ ହୋଇ ଯାଇଥା'ନ୍ତେ।

ଅଧ୍ୟାପକ ବିଶ୍ୱରଞ୍ଜନଙ୍କ ମନ୍ତବ୍ୟ।

ମୁଁ ଖଣ୍ଡେ ସିଗାରେଟ୍‌ରେ ଅଗ୍ନି ସଂଯୋଗ କଲି। ମୋ ଧୂଆଁ ଓ ସେ ବାବାଜୀଙ୍କ ଗଞ୍ଜେଇ ଧୂଆଁ ଏକାଠି ଗୋଳେଇ ହେଇ ଉପରକୁ ଉଠିଗଲା।

– ଚାଲନ୍ତୁ ଯିବା।

ମୁଁ ବିଶ୍ୱରଞ୍ଜନଙ୍କୁ ଅନୁରୋଧ କଲି।

– କୁଆଡ଼େ ?

– ସିଂହଦ୍ୱାର।

– ଆପଣଙ୍କ ପରିଚୟ ତ ଦେଲେନି !

– ଆପଣ ସେ ଭିକାରୀଙ୍କ ପରିଚୟ ତ ମାଗି ନାହାନ୍ତି ?

ତାଙ୍କ ମୁଖରେ କିପରି ଏକ ଆକୁଳ ଭାବ ମୁଁ ଲକ୍ଷ କଲି। ତା'ପରେ ଟିକେ ହସ।

– ଚାଲନ୍ତୁ . . .

ଖରା ବଢ଼ି ଗଲାଣି। ପୁଞ୍ଜକାୟା ଯାତ୍ରୀଙ୍କର ଭିଡ଼ରେ ବଡ଼ଦାଣ୍ଡ ଲୋକାରଣ୍ୟ। ବହୁ ବସ୍ ବିଭିନ୍ନ ପ୍ରଦେଶରୁ ଆସିଛି। ବଳଗଣ୍ଡିଠାରୁ ଆଖି ପାଇବା ଯାଏଁ ଖାଲି ବସ୍‌ଙ୍କର ମେଳଣ। ରାସ୍ତାରେ ଲୋକେ ଚୁଲି ବସେଇ ରାନ୍ଧୁଛନ୍ତି। ରାସ୍ତାରେ ଦରି ପାରି ଶୋଇଛନ୍ତି। ବସ୍‌ର ଛାତ ଉପରେ ଡ୍ରାଇଭର କ୍ଲିନର ପ୍ରଭୃତି ନିରାଲମ୍ବ ଭାବେ ବିଶ୍ରାମ ନେଉଛନ୍ତି। କୌଣସି ଏକ ମେଳାରେ ଗଲାପରି ଲାଗୁଛି। କେତେ ବର୍ଣ୍ଣ, କେତେ ଭାଷା, କେତେ ପ୍ରକାରର ବେଶ ପରିପାଟୀ। ପଣ୍ଡାମାନେ ତାଙ୍କର ଲାଲିଆ କନା ବନ୍ଧେଇ ଖାତା ସବୁ ହାତରେ ଧରି ଏ ବସ୍ ସେ ବସ୍ ହେଉଛନ୍ତି।

– ସେଇ ଖାତାମାନଙ୍କରେ ଯାତ୍ରୀଙ୍କର ବଂଶ ପରମ୍ପରା ଅଛି – ଯାହା ହୁଏତ ସେଇ ଯାତ୍ରୀମାନେ ବି ଜାଣି ନଥିବେ। ଏଇ ଖାତା ଲାଗି କେତେ ଯେ ମାର୍‌ପିଟ୍ ମକଦ୍ଦମା ! ଭାଇଭାଗ ବେଳେ ପଣ୍ଡାମାନଙ୍କର ଏ ଯଜମାନୀ ବି ବଣ୍ଟା ହୁଏ। ପଣ୍ଡାଙ୍କ ସ୍ଥାନ ସରକାରୀ ଟୁରିଷ୍ଟ ଗାଇଡ୍ ନେଇ ପାରିବେନି। ପଣ୍ଡାମାନେ ହିଁ ତାଙ୍କ ଗୁମାସ୍ତାଙ୍କ ମାଧ୍ୟମରେ ଜଗନ୍ନାଥ ତତ୍ତ୍ୱକୁ ବଞ୍ଚେଇ ରଖି ପାରିଛନ୍ତି।

ବିଶ୍ୱରଞ୍ଜନ ମତେ ସେ ଲାଲିଆ ଖାତାକୁ ନିର୍ଦ୍ଦେଶ କରି କହି ଚାଲିଥିଲେ।

ବୋଝିଆ ଜଣେ ମହାପ୍ରସାଦ ମୁଣ୍ଡେଇ ଆସୁଛି ଜଣେ ଯାତ୍ରୀ ଗୁମାସ୍ତା ସହ।

– ଏତେ ସକାଳୁ ମହାପ୍ରସାଦ ?

କୌତୂହଳ ବଶତଃ ପଚାରି ଦେଲି।

– ପହିଲି ଭୋଗ ପୁଷମାସ ଯାକ ଏ ସକାଳୁଆ ଭୋଗ ହୁଏ ଜଗନ୍ନାଥଙ୍କର। ଏ ମାସକ ଲକ୍ଷ୍ମୀ ଯାଇଛନ୍ତି ବାପ ଘରକୁ ଯେ – ମା' ରାନ୍ଧି କରି ସକାଳୁ ସକାଳୁ ଜଗନ୍ନାଥଙ୍କୁ ଖୁଆଉଛନ୍ତି। ଖେଚେଡ଼ି ଭୋଗ।

– ଶୀତ ଦିନିଆ ସକାଳୁ ସକାଳୁ ଏ ବି ଗୋଟେ ମଉଜ – ଜଗନ୍ନାଥଙ୍କର ନୁହେଁ ?

– କେବଳ ଓଡ଼ଇଆମାନେ ହିଁ ଦେବତାକୁ ରାଜା ଓ ସାମନ୍ତର ଭେଶରେ ଜାଜ୍ୱଲ୍ୟମାନ କରି ଓ ରାଜାଙ୍କୁ ଚଣ୍ଡାଳ ସେବକରେ ପରିଣତ କରି – ସମାଜ, ଧର୍ମ ଓ ଶାସନ କ୍ଷେତ୍ରରେ ସଂହତି ରକ୍ଷା କରିପାରି ଥିଲେ। ଜଗନ୍ନାଥ କ'ଣ ଛପନ ପଉଟି ଖାଏ ? ଆମେ ଖାଉ – କିନ୍ତୁ ସେ ଖାଇଗଲା ବୋଲି ଗୀତରେ, କବିତାରେ, ଭଜନରେ ତାକୁ ପୁଣି ଗାଳି ଦେଇ ଆମେ ତାକୁ ମହନୀୟ କରୁ। କୋଉଠି ଆଉ ଦେବତାକୁ ଏତେ ଶ୍ରଦ୍ଧାରେ ଭକ୍ତ ଗାଳି ଦେଇଛି କି ? ସବୁଠି ପ୍ରଶଂସା କରୁଛନ୍ତି ନହେଲେ ପ୍ରାର୍ଥନା କରିଛନ୍ତି। ଓଡ଼ିଆଏ କରନ୍ତି ନାହିଁ – ଦାବୀ କରନ୍ତି – ଶ୍ରଦ୍ଧାରେ, ମମତାର ଅହଂକାରରେ।

ଏକ ନିଶ୍ୱାସରେ କହିସାରି ବିଶ୍ୱରଞ୍ଜନ ଚୁପ୍ ହେଇଗଲେ। ବାମ କରର ଏକ ଛୋଟିଆ ମନ୍ଦିର ଆଡ଼କୁ ମୁଁ ଅଙ୍ଗୁଳି ନିର୍ଦ୍ଦେଶ କରି ପଚାରୁଥିଲି –

– ଜଗନ୍ନାଥଙ୍କ ମାଉସୀ ଘର ଏଇଟା ?

– ଲୋକେ କହନ୍ତି ! ବାହୁଡ଼ା ବେଳେ ଜଗନ୍ନାଥଙ୍କୁ ଏଠି ପୋଡ଼ପିଠା କଟା ହେଇ ଭୋଗ ଦିଆଯାଏ।

ବଡ଼ କୌତୂହଳ ଜନକ ଘଟଣା। ଜଗତର ନାଥ – ଯିଏ ସବୁ କିଛିର ସ୍ରଷ୍ଟା – ତା'ର ପୁଣି ମା' କିଏ ? ସେ ମା' ତାକୁ ପୁଷ ମାସରେ ସକାଳୁ ସକାଳୁ ଖେଚେଡ଼ି ରାନ୍ଧି ଖୁଆଏ ଅଥଚ ତା'ର ନାଁ କେହି କହି ପାରିବେନି। ଗୌଡ଼ୀୟ ବୈଷ୍ଣବଙ୍କ କଥାରେ ହୁଏତ ସେ ମା'କୁ ଯଶୋଦା ବା ଦେବକୀ କହି ଦିଆଯାଇପାରେ – କିନ୍ତୁ ଜଗନ୍ନାଥଙ୍କର ସେ କ'ଣ ମା' ? ଯଦି ସେ ମା'ର ସ୍ଥିତି ନାହିଁ – ତା'ହେଲେ ତାଙ୍କର ମାଉସୀ ଆସିଲା କୋଉଠୁ ? କ'ଣ ତାଙ୍କ ନାମ ? କ'ଣ ତାଙ୍କର ଅସ୍ତିତ୍ୱ ? ସେମାନଙ୍କର ବଂଶ କୁଟୁମ୍ବ କିଏ ?

ସେଇ ମନ୍ଦିର ଆଡ଼େ ଅଗତ୍ୟା ମୁଁ ପାଦ ବଢ଼େଇଲି।

ବଡ଼ଦାଣ୍ଡ କରର ଛୋଟ ଗୋଟିଏ ଚୁନଲିପା ମନ୍ଦିର। କାନ୍ଥରେ ଲେଖା ହେଇଛି ଜଗନ୍ନାଥଙ୍କ ମାଉସୀ ଘର। ମନ୍ଦିର ଚୂଡ଼ାରେ ଚକ୍ର ଅଛି। ମୁଖଶାଳାର କାନ୍ଥରେ ଗୋଟିଏ ଶଙ୍ଖ ମଲମଲ ପଥର ଚପା ହେଇଛି ଠିକ୍ ଦୁଆର ପାଖରେ। ସେ ପଥରରେ ଗୋଟିଏ ସଂସ୍କୃତ ଶ୍ଳୋକ – ବଙ୍ଗଳା ଅକ୍ଷରରେ ଲେଖା। ଶ୍ଳୋକ 'ଅର୍ଦ୍ଧାଶନୀ'ଙ୍କ ଉଦ୍ଦେଶ୍ୟରେ ଉତ୍ସର୍ଗୀକୃତ।

କଛାମରା ଗାମୁଛା ପିନ୍ଧି – ଗୋଟିଏ ଗାମୁଛା କାନ୍ଧରେ ପକେଇ ପୂଜକ ମନ୍ଦିର ଭିତରୁ ବାହାରି ଆସୁଥିଲେ। ବୟସ ତିରିଶଠୁ ପଇଁତିରିଶ। ଆଖି ଗୋଟିଏ ଅସୁବିଧା ତାଙ୍କର। ତାଙ୍କୁ ନମସ୍କାର କରି – ମାଉସୀ ମା'ଙ୍କ ଦର୍ଶନ ଭିକ୍ଷା କଲି।

କିଛିଦିନ ତଳେ ଖବର କାଗଜରେ ପଢ଼ିଥିଲି – ରାଉରକେଲାରେ ମାଉସୀ ମା'ଙ୍କ ମନ୍ଦିର ନିର୍ମାଣ ପାଇଁ ଉଦ୍‌ଯୋଗ ହେଉଛି। ମାଉସୀଙ୍କ ଘରକୁ ରଥଯାତ୍ରାରେ ଜଗନ୍ନାଥ ଯାଆନ୍ତି ବୋଲି ବହୁ ଲୋକଙ୍କର ଏକ ଭ୍ରମ ଧାରଣା ଅଛି। ଗୁଣ୍ଡିଚା ମନ୍ଦିର ଓ ମାଉସୀ ମା'ଙ୍କ ମନ୍ଦିର କ'ଣ ଏକା କଥା? ଭାବୁଥିଲି – ଏଣେ ଜୋତା ଖୋଲୁଥିଲି।

ଆସନ୍ତୁ!

ପୂଜକ ଡାକିଲେ।

ମନ୍ଦିର ଭିତର ଗୋଟିଏ ଗୁମ୍ଫା ପରି। ମୁଣ୍ଡ ନୁଆଁଇ ଠାକୁରାଣୀଙ୍କ ଯାଏଁ ଗଲି। ଆଶ୍ଚର୍ଯ୍ୟ! ଏ ତ ସୁଭଦ୍ରାଙ୍କର ଅବିକଳ ନକଲ! ହାତ ଗୋଡ଼ କିଛି ଦେଖା ଯାଉନି – କେବଳ ସୁଭଦ୍ରାଙ୍କ ମୁହଁ – ହଳଦିଆ ରଙ୍ଗର। ମୁହଁଟି ଛଡ଼ା ବାକି ସବୁକିଛି ବସ୍ତ୍ରାଚ୍ଛାଦିତ।

– ଭାଇନା! ୟେତ ସୁଭଦ୍ରା!

ପୂଜକଙ୍କର କିଛି ଉତ୍ତର ନାହିଁ।

– ମାଉସୀ ମା'ଙ୍କ ବିଷୟରେ ମତେ କିଛି କହି ପାରିବେ?

– ଆପଣ କ'ଣ ବହି ଲେଖୁଛନ୍ତି କି? କିଛିଦିନ ତଳେ ଡଃ ଖଗେଶ୍ୱର ମହାପାତ୍ର

ମଧ୍ୟ ଆସିଥିଲେ। ପଚରାଉଚରା କରୁଥିଲେ। କ'ଣ କଲେ କେଜାଣି ?

– ନାଁ, ବହି ଲେଖୁନି। ନିଜ ଅନୁସନ୍ଧିତ୍ସାରୁ ପଚାରିଲି।

– ଶ୍ରୀକ୍ଷେତ୍ର ପରିଚୟ ପଢ଼ିଥିବେ, ସେଥିରେ ମାଉସୀ ମା'ଙ୍କୁ 'ଅର୍ଦ୍ଧାଶନୀ' ବା 'ଯୂପଦେବୀ' ବୋଲି ବର୍ଣ୍ଣନା କରାହୋଇଛି। ଠାକୁରାଣୀଙ୍କୁ ବନଦୁର୍ଗା ମନ୍ତ୍ରରେ ପୂଜା କରାହୁଏ ଏବଂ ବାହୁଡ଼ା ଦିନ ପୋଡ଼ପିଠା କରି ତାକୁ 'କାଟି' ଜଗନ୍ନାଥଙ୍କୁ ତାଙ୍କ ମାଉସୀ ଖାଇବାକୁ ଦିଅନ୍ତି।

– ଠାକୁରାଣୀଙ୍କ ହାତ, ଗୋଡ଼ କ'ଣ କିଛି ନାହିଁ? ଆୟୁଧ ତାଙ୍କର କ'ଣ? ବାହନ କିଏ ସେ ? କୋଉ ଆସନରେ ଉପବିଷ୍ଟ ?

ପୂଜକ ଟିକେ ଇତସ୍ତତଃ ହେଲେ।

– ଠାକୁରାଣୀଙ୍କ ଉପରେ ଢ଼ଙ୍କା ହେଇଥିବା ଏ ବସ୍ତ୍ର ଟିକେ ଉଠେଇ ମତେ ଦେଖେଇବେ ?

ଏଥର ପୂଜକ ନିଜକୁ ଦୃଢ଼ କରିନେଲା ପରି ଲାଗିଲେ।

– ଆପଣ ତା'ହେଲେ ପୁରାପୁରି ଜାଣିବାକୁ ଚାହୁଁଛନ୍ତି। ଦେଖନ୍ତୁ –

ଠାକୁରାଣୀଙ୍କ ମୁହଁଠାରୁ ପାଦ ପର୍ଯ୍ୟନ୍ତର ଲୁଗା ଉଠେଇ ଦେଲେ ପୂଜକ। ଲୁଗା ତଳେ ଏକ ପଥର ମୂର୍ତ୍ତିର ଦୁଇଟି ନିଟୋଳ ଜାନୁଠାରୁ ପାଦ ପର୍ଯ୍ୟନ୍ତ ଅଛି। ଜାନୁଠାରୁ ଉପରକୁ କୌଣସି ପଦାର୍ଥରେ ସୁଭଦ୍ରାଙ୍କ ମୁଖର ଏକ ଖୋଳ ଚପେଇ ଦିଆଯାଇଛି। ତେଣୁ ପ୍ରକୃତ ପ୍ରସ୍ତର ମୂର୍ତ୍ତିର ଜାନୁଠାରୁ ଅନ୍ୟ କିଛି ଦେଖା ଯାଉନି। ପାଦ ଘସରା ହେଇ ଆସିଛି ! ପାର୍ଶ୍ୱ ଦେବତା ବା ଅନ୍ୟ କିଛି ଦୁଇ ଗୋଡ଼ର ଦୁଇ ପଟେ ଥିବାର ଲାଗୁଛି – କିନ୍ତୁ କିଛି ବୁଝି ହେଉନି। ସମୁଦାୟ ମୂର୍ତ୍ତିଟି ଅଢ଼େଇ ଫୁଟ ତିନି ଫୁଟ ହେବ। ମୂର୍ତ୍ତିର ଶୀର୍ଷକୁ ଦେଖିଲେ ମଧ୍ୟ ଏକ ଖୋଳ ଦିଆ ହେଇଥିବାର ପୁରାପୁରି ବୁଝି ହେଉଛି।

– ଏ ମୁଖା କୋଉଥିରେ ତିଆରି ?

ପୂଜକଙ୍କୁ ମୁଁ ପଚାରିଲି।

– ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା ଇତ୍ୟାଦିଙ୍କ ପାଇଁ ଯେଉଁ 'ଓଷୁଅ' ତିଆରି ହୁଏ – ସେଇଥିରେ।

– ଖୋଳକୁ ବଦଳା ହେଉଥିବ ?

– ହଁ ମୋ ନନାଙ୍କ ବେଳେ – ମୁଁ ଖୁବ୍ ଛୋଟ ଥିଲି – ବଦଳା ହେଇଥିଲା।

– ଭିତରେ ଲୁଚି ଯାଇଥିବା ମୂର୍ତ୍ତିର କିଛି ଧାରଣା ଅଛି ?

– ନାଇଁ ଆଜ୍ଞା !

– ଏମିତି ଖୋଳ କାହିଁକି ଦିଆହେଲା ?

– ନନା କହୁଥିଲେ – 'ବୌଦ୍ଧ'ମାନେ କାଳେ ଏ ମୂର୍ତ୍ତି ନେଇଯିବେ – ଏଇ ଭୟରେ ବହୁଦିନ ଆଗେ ବ୍ରାହ୍ମଣମାନେ ଏପରି କରି ଠାକୁରାଣୀଙ୍କୁ ରକ୍ଷା କରିଦେଲେ।

– ୟାଙ୍କୁ 'ୟୂପଦେବୀ' କାହିଁକି କହୁଛନ୍ତି – କିଛି ଯଜ୍ଞ ସହ ସଂପୃକ୍ତ ? 'ୟୂପ' ତ ଯଜ୍ଞ ନିକଟରେ ଥିବା କାଠ ଖଣ୍ଡକୁ କୁହନ୍ତି !

– 'ୟୂପଦେବୀ', 'ଅର୍ଦ୍ଧାଶନୀ' ଏମିତି କେତେ ପ୍ରକାରେ କହୁଛନ୍ତି। ମୁଁ କିଛି ଜାଣେନି ଆଜ୍ଞା ! ପଣ୍ଡିତ ଶାସ୍ତ୍ରୀ ଓ ରଥଶର୍ମା ଯାହା କହନ୍ତି। ଆଉ ସେ ବଙ୍ଗଳା ଶ୍ଳୋକ ଯାହା ବାହାରେ ଅଛି – ତା'ର ଏବକାର କଥା ନିଳାଦ୍ରି ବାନାର୍ଜିଙ୍କ ଘରୁ ପଢ଼ିଛି।

ଉଭୟେ ଗମ୍ଭୀରା ଭିତରୁ ବାହାରି ଆସିଲୁ। ମୁଁ ପୂଜକଙ୍କୁ ଦକ୍ଷିଣା ଯାଚିଲି। ସେ ନେଲେନି। ଜୋତା ପିନ୍ଧି, ନମସ୍କାର କରି, ବାହାରକୁ ଚାଲି ଆସିଲି।

ପୁଷ ମାସିଆ ଖରା ସେମିତି ଦେଖା ଯାଉନି। ପୁଷୁ-କାଆଁଳିଆ ଆକାଶ। ଯାତ୍ରୀଙ୍କ ବସ୍ ସବୁ କାହିଁ କେତେଦୂର ଲାଗିଛି। ବିଶ୍ୱରଞ୍ଜନ ଆଉ ଦୁଇଜଣ ଭଦ୍ରବ୍ୟକ୍ତିଙ୍କ ସହ ଆଳାପ ରତ। ଜଣେ ବହୁତ ଲମ୍ବା – ଚଷମା ପିନ୍ଧା ଭଦ୍ରବ୍ୟକ୍ତି। ବୟସ ସଇଁତିରିଶ ଅଠତିରିଶ ହେବ। ଗୋଟେ ଟି ସାର୍ଟ ଓ ଫୁଲ୍ ପ୍ୟାଣ୍ଟ ପିନ୍ଧିଛନ୍ତି ଏବଂ ଅନ୍ୟ ଜଣକ ବୟସ ତିରିଶ ତଳେ। ନେଳିଆ ଟେରିନ୍‌ର ହାୱାଇ ଓ ପ୍ୟାଣ୍ଟ ପିନ୍ଧା ଶ୍ୟାମଳ ଯୁବକ। ଆଖି ଟିକେ ନୀଳ। ପତଳା ଦେହ ବିଶ୍ୱରଙ୍ଗନଙ୍କ ପରି।

ବିଶ୍ୱରଞ୍ଜନଙ୍କ ନିକଟରେ ପହଞ୍ଚିବା କ୍ଷଣି ସେ ମତେ ଅନ୍ୟ ଦୁଇ ଭଦ୍ରବ୍ୟକ୍ତିଙ୍କ ସହ ପରିଚିତ କେରେଇ ଦେଲେ –

– ୟେ ହେଲେ ପ୍ରଫେସର ଚକ୍ରବର୍ତ୍ତୀ – ଇଣ୍ଡିଆନ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ଷ୍ଟାଟିଷ୍ଟିକ୍‌ସ ତରଫରୁ ଆସିଛନ୍ତି ଗବେଷଣା ପାଇଁ। 'ପୁରୀକୁ ଯାତ୍ରୀ ଆସନ୍ତି କାହିଁକି' ତାଙ୍କର ବର୍ତ୍ତମାନର ଏଠି ଅଧ୍ୟୟନ। ଆଉ ୟେ ହେଲେ ଅଧ୍ୟାପକ ଫନୀ ମହାନ୍ତି। ଏଇଠି ଅଧ୍ୟାପନା କରନ୍ତି ଦର୍ଶନ ବିଭାଗରେ। ବର୍ତ୍ତମାନ – 'ଜଗନ୍ନାଥ ପୁରୁଷୋତ୍ତମ'ଙ୍କ ଉପରେ ଗବେଷଣା କରୁଛନ୍ତି।

ମୋ ବିଷୟରେ କିଛି ନକହି ସେ କଥା ଶେଷ କଲେ। ଆପୋଷରେ ଅଭିବାଦନ କଲୁ।

ପାଖରେ ଗୋଟିଏ କ୍ୟାବିନ୍ ଦୋକାନ – ପାନ ବିଡ଼ି ସିଗାରେଟ୍ ବିକ୍ରି ହୁଏ। ପୂଜକ ସେଇଠି ଛିଡ଼ା ହେଇ କ'ଣ କଥାଭାଷା କରୁ କରୁ ହଠାତ୍ ପାଟି କରି ଉଠିଲେ –

– ଅଧିକାରୀଏ ! – ଆଜ୍ଞା ଟିକେ ଶୁଣିବା ହଉ।

ଆମ ସଭିଙ୍କ ଆଖି ଘୂରିଗଲା। ମଠା ଚାଦର କାନ୍ଧରେ ପକେଇ ମଠା ପରିହିତ ଜଣେ ଅଶୀ ବର୍ଷ ବୟସର ବୃଦ୍ଧ ବାବାଙ୍କ ବଡ଼ଦାଣ୍ଡରୁ ସେ ଦୋକାନ ଆଡ଼େ ମୁହଁଉ ଥିବାର ଲକ୍ଷ୍ୟ କଲୁ ସମସ୍ତେ। ମୁଁ ସେ ପାନ ଦୋକାନ ଆଡ଼େ ପାଦ ବଢ଼େଇଲି। ଅନ୍ୟମାନେ ବି ଆସିଲେ।

ଆମକୁ ଦେଖି ସେ ପାନ ଦୋକାନୀଟି ମଧ୍ୟ ଉତ୍‌ଫୁଲ୍ଲ ହେଇ କହି ଉଠିଲା –

– ଅଧିକାରୀଏ ବହୁତ କଥା ଜାଣନ୍ତି ଆଜ୍ଞା !

– କ'ଣ ବାବୁ!

ଅଧିକାରୀଙ୍କ ପ୍ରଶ୍ନ।

– ଆଜ୍ଞା ମୋର ଏ ମାଉସୀ ମା'ଙ୍କ ବିଷୟରେ ପ୍ରଶ୍ନ ଥିଲା। ଯେ କିଏ ସେ?

– ଯେ ପରା 'ଅର୍ଦ୍ଧଶୋଷଣୀ'! ଶ୍ରୀକ୍ଷେତ୍ର ହେଲା – ଅପୋଡ଼ା, ଅବୁଡ଼ା ଭୂଇଁ। ବୁଝିଲ ପୁଅ। ଯେତେବେଳେ ପ୍ରଳୟ ଆସେ – ଯେ ଅର୍ଦ୍ଧେକ ଶୋଷି ଦିଅନ୍ତି ବୋଲି ବଡ଼ ଦାଣ୍ଡରେ ପାଣି ପଶେନି। ଆଗେ ବଡ଼ଦାଣ୍ଡ ଏଇଠୁ ବଳଗଣ୍ଡି ଭିତରେ ଶେଷ ହଉଥିଲା। ଏଠୁ ସିଆଡ଼ିକି ବଡ଼ଶଙ୍ଖ ଯାଏଁ ଥିଲା ନଈ। ଏଇ ପାଖାପାଖି ରଥ ଅଟକୁଥିଲା ଏବଂ ଦିଅଁ ଚାପରେ ବିଜେ ହେଇ, ନଈ ପାରିହେଇ – ଗୁଣ୍ଡିଚା ଘରକୁ ଯାଉଥିଲେ। ସେପଟେ ବି ତିନିଟା ରଥ ହଉଥିଲା। ଇଂରେଜ ସରକାର ଅମଳରେ ନଈପୋତି ରାସ୍ତା ହେଲା ନା!

– ହେଇଥିବ ଆଜ୍ଞା! ସେଟଲ୍‌ମେଣ୍ଟ କାଗଜ ପତ୍ରରୁ ଠାକୁରାଣୀଙ୍କ ନାଁ 'ଅର୍ଦ୍ଧଶୋଷଣୀ' ବାହାରୁଛି ପରା।

ପାନ ଦୋକାନୀଟି ଏଥର ପାଟି କରି ଉଠିଲା।

– କ'ଣ ହେଇଛି?

ଅଧ୍ୟାପକ ଚକ୍ରବର୍ତ୍ତି ମତେ ପ୍ରଶ୍ନ କଲେ ଇଂରାଜୀରେ।

– ଆଜ୍ଞା! ଏ ଠାକୁରାଣୀଙ୍କୁ ପୂଜା କରା ହେଉଛି 'ବନଦୁର୍ଗା ମନ୍ତ୍ର'ରେ। ଏଠି ପୋଡ଼ପିଠା ହେଇ – ତା' ପୁଣି କଟା ହେଇ ଜଗନ୍ନାଥଙ୍କୁ ଅର୍ପଣ କରାଯାଏ। 'ପୋଡ଼ପିଠା' ଶାବରୀ ସଭ୍ୟତାର ଏବଂ କଟା ହେବାର ଅର୍ଥ 'ବଳି'। ଠାକୁରାଣୀଙ୍କ ମୂର୍ତ୍ତିର ତଳଭାଗକୁ ଯେତିକି ଦେଖା ଯାଉଛି ସେଥିରୁ ଏହା ଏକ ବଜ୍ରଯାନ ତାନ୍ତ୍ରିକ ମୂର୍ତ୍ତି ପରି ପ୍ରତୀତ ହେଉଛନ୍ତି। ପୂଜକ ମଧ୍ୟ କହନ୍ତି ଏ ଠାକୁରାଣୀଙ୍କୁ କାଳେ 'ବୌଦ୍ଧ'ମାନେ ନେଇଯିବେ ବୋଲି – ତାଙ୍କ ଉପରେ ସୁଭଦ୍ରାଙ୍କ ମୁଖସମ ଏକ ଖୋଳ ପ୍ରସ୍ତୁତ କରି ଚପେଇ ଦିଆଯାଇଛି। ଶ୍ରୀକ୍ଷେତ୍ର ପରିଚୟରେ ଏହାଙ୍କୁ 'ଅର୍ଦ୍ଧାଶନୀ' ବା 'ଯୂପଦେବୀ' ବୋଲି ବର୍ଣ୍ଣନା କରାଯାଇଛି – ଏବଂ ପୂଜକ କୁହନ୍ତି ତାହାହିଁ ବର୍ତ୍ତମାନର ପଣ୍ଡିତଙ୍କ ମତ। ବର୍ତ୍ତମାନ ଏ ବାବାଜୀ ଓ ପାନ ଦୋକାନୀ କହୁଛନ୍ତି – ଏହାଙ୍କ ନାମ 'ଅର୍ଦ୍ଧଶୋଷଣୀ'। ମୋର ପ୍ରଶ୍ନ ତାହେଲେ ସେ ବାସ୍ତବରେ କଅଣ?

ଏତକ ଇଂରାଜୀରେ ତାଙ୍କୁ ଉତ୍ତର ଦେଇ ମୁଁ ଅଧ୍ୟାପକ ମହାନ୍ତିଙ୍କୁ ଚାହିଁଲି। କାଳେ ସେ କିଛି ଆଲୋକପାତ କରିବେ ବୋଲି।

– ଦେଖନ୍ତୁ! ଏ ସହର ଗୋଟେ ପ୍ରବାଦ ଓ କିମ୍ବଦନ୍ତୀର ସହର। ସବୁଟା ଉପରେ ଏତେ ଖୋଳ ଚଢ଼ିଯାଇଛି ଯେ – ତା'ଭିତରୁ କୋଉଟା ଠିକ୍ କୋଉଟା ଭୁଲ୍ କହିବା ଦୁରୂହ। ଅଧ୍ୟାପକ ମହାନ୍ତି ହସିଲେ।

– ତା'ଠିକ୍! ଚକ୍ରବର୍ତ୍ତୀଙ୍କ ସମର୍ଥନ।

ମୁଁ ମୁଣ୍ଡ ହଲେଇଲି।

– କିଛି ସମୟ ଆଗରୁ ବସ୍‌ରେ ଆସିଲାବେଳେ ଜଣେ ବାବାଜୀଙ୍କ ମୁହଁରୁ ଶୁଣିଲି ଚୈତନ୍ୟ ପୁରୀକୁ ରଥଯାତ୍ରା ଦିନ ଆସିଥିଲେ ବୋଲି। ଅଥଚ ଡଃ ଦୀନେଶ ଚନ୍ଦ୍ର ସେନ୍‌ଙ୍କ ମତରେ ଚୈତନ୍ୟ ୧୫୧୦ ଖ୍ରୀଷ୍ଟାବ୍ଦ ଫେବୃୟାରୀ ମାସ ୯ ତାରିଖ ଦିନ ଅପରାହ୍ଣରେ ପୁରୀଠାରେ ଆସି ପହଞ୍ଚିଥିଲେ। ପଣ୍ଡିତ ବିନାୟକ ମିଶ୍ରଙ୍କ ମତରେ ଚୈତନ୍ୟ ୧୫୦୯ରେ ଆସିଥିଲେ। ପୁଣି ସେ ବାବାଜୀ କହିଲେ – ଚୈତନ୍ୟ ଜଗନ୍ନାଥଙ୍କ ପ୍ରଥମ ଦର୍ଶନରେ ଭାବ ବିହ୍ୱଳହୋଇ – "ଯଃ କୌମାର ହର ସା ଏକହି ବରସ୍ତା। ସା ବେତସି ତରୁତଳେ ଉଦ୍‌ଘାଟିତା" – ଭାବରେ ଜଗନ୍ନାଥଙ୍କୁ ଆକ୍ଷେପ କରି ଅଚେତ ହୋଇଗଲେ। ତାଙ୍କୁ ରାୟ ରାମାନନ୍ଦ କୋଳକୁ ଉଠେଇ ନେଇଥିଲେ। ଅଥଚ ମୁଁ ଜାଣେ ବୃନ୍ଦାବନ ଦାସଙ୍କ ବର୍ଣ୍ଣନା ଅନୁସାରେ – ଏ ଘଟଣା ଶ୍ରୀମନ୍ଦିରରେ ଘଟିଥିଲା ଏବଂ ପଣ୍ଡାମାନେ ଚୈତନ୍ୟଙ୍କୁ ପାଗଳ ଭାବି ତାଙ୍କ ପ୍ରତି ଖରାପ ବ୍ୟବହାର କରିବାରୁ ସେତେବେଳେ ଉପସ୍ଥିତ ଥିବା ସାର୍ବଭୌମ ବାସୁଦେବ ତାଙ୍କୁ ନିଜ ଗୃହକୁ ନେଇଯାଇଥିଲେ। ସେ ଜାଣିପାରିଲେ ଯେ ଏହି ଯୁବକ ସନ୍ନ୍ୟାସୀ ହେଉଛନ୍ତି ନବଦ୍ୱୀପରେ ତାଙ୍କର ପିତାଙ୍କର ବନ୍ଧୁ ନୀଳାମ୍ବର ଚକ୍ରବର୍ତ୍ତୀଙ୍କର ନାତି! ତେଣୁ ସାର୍ବଭୌମ ତାଙ୍କୁ ସାହାଯ୍ୟ କରିଥିଲେ।

ଅଧ୍ୟାପକ ମହାନ୍ତି ଏଥର ମୁହଁ ଖୋଲିଲେ –

– ଦେଖନ୍ତୁ! ଚୈତନ୍ୟଙ୍କ ପୂର୍ବପୁରୁଷ ଯାଜପୁର ଅଞ୍ଚଳର ବୋଲି ଜଣାଯାଏ। ପଣ୍ଡିତ ନୀଳକଣ୍ଠ ତାଙ୍କ 'ଓଡ଼ିଆ ସାହିତ୍ୟର କ୍ରମ ପରିଣାମ'ରେ ଲେଖନ୍ତି ଯେ କପିଳେନ୍ଦ୍ରଦେବ ଯେତେବେଳେ 'ଛେରାପହଁରା' ଉପରେ ପ୍ରାଧାନ୍ୟ ଦେଇ 'ସମାଜର ସବୁଠୁ ହୀନକର୍ମି ସମ୍ରାଟର' ବୋଲି ଘୋଷଣା କଲେ – ସେତେବେଳେ ଏଇ ମୈତ୍ରୀଧର୍ମୀ ସମ୍ରାଟର ସାମାଜିକ ଚେତନାକୁ ଅସହ୍ୟ ମନେକରି ଚୈତନ୍ୟଙ୍କ ପୂର୍ବପୁରୁଷ ଉପେନ୍ଦ୍ର ମିଶ୍ର ଓଡ଼ିଶା ଛାଡ଼ି ତନ୍ତ୍ରଭୂମି ସିଲହଟକୁ ଚାଲିଯାଇଥିଲେ। କିଛି ପୁରୁଷ ପରେ ଯେତେବେଳେ 'ଭକ୍ତଧର୍ମ'ର ପ୍ରଚାରକ ହେଇ ସେଇ ବଂଶର ଦାୟାଦ ପୁରୀ ଆସିଲେ ଏକ 'ବିଶ୍ୱାସେ ମିଳଇ ହରି ତର୍କେ ବହୁଦୂର' ପ୍ରଚାର କଲେ ସେତେବେଳେ ଶୂନ୍ୟବାଦୀ, ମୈତ୍ରୀଧର୍ମୀ, ଧର୍ମ ସର୍ବସ୍ୱ ଓଡ଼ିଆ ଜାତି ଏହା ମାନିନେଇ ନଥିଲେ। ତା' ହେଇଥିଲେ 'ଭକ୍ତି ଧର୍ମ' – ଓଡ଼ିଶାରେ ଉତ୍କଳୀୟ, ଗୌଡ଼ୀୟ, ସହଜିଆ ଏବଂ ଶେଷକୁ 'ଗୃହୀ-ବୈଷ୍ଣବ' ଧାରାରେ ବିଭକ୍ତ ହେଇ ନଥା'ନ୍ତା। ଓଡ଼ିଆମାନଙ୍କର ଯେଉଁ ଅଭିଯାନ – ସେଇଥିଲାଗି କେତେ ପ୍ରକାର କିମ୍ବଦନ୍ତୀ ଓ ପ୍ରବାଦର ସୃଷ୍ଟି ହେଲା ଚୈତନ୍ୟଙ୍କ ବିରୁଦ୍ଧରେ। ତା ଭିତରୁ କିଏ ସତ କିଏ ମିଛ – କିପରି ଜାଣିବା? ସିଗାରେଟ୍ ଖଣ୍ଡେ ମତେ ବଢ଼େଇ ଦଉ ଦଉ ଅଧ୍ୟାପକ ଚକ୍ରବର୍ତ୍ତୀ ହସିଲେ।

– ଇତିହାସ ବି କ'ଣ ସବୁ ସମୟରେ ସଠିକ୍ ଖବର ଦେଉଛି ବୋଲି କହିହେବ? ଚୈତନ୍ୟ କୋଉଦିନ ଆସିଥିଲେ – କ'ଣ ହେଇଥିଲା ସେ ସବୁ ସେ ତାଙ୍କ

ଡାଏରୀରେ ଲେଖି ନାହାନ୍ତି। ଚୈତନ୍ୟ ମହାତ୍ମା ଭାବେ ଗୃହୀତ ହେଇଆସିବା ପରେ ଏସବୁ କିଛି ତାଙ୍କ ଭକ୍ତମାନେ ତାଙ୍କପାଇଁ ଲେଖିଛନ୍ତି। ଦ୍ୱିତୀୟତଃ ଚୈତନ୍ୟ ପୁରୀକୁ କ'ଣ ଥରେମାତ୍ର ଆସିଥିଲେ। ସେ ଏଠିକି କେତେଥର ଆସିଛନ୍ତି ପୁଣି ଏଠା ଛାଡ଼ି ବିଭିନ୍ନ ସ୍ଥାନକୁ ଯାଇଛନ୍ତି। ସେ ହୁଏତ ରଥ ସମୟରେ ବି ଥରେ ଆସିଥାଇ ପାରନ୍ତି। ପୁଣି ରଥ ସମୟରେ ପୁରୀରେ ଯେଉଁ ବୈଷ୍ଣବ ଭକ୍ତଙ୍କର ମେଳାହୁଏ – ତା'ର କାରଣ କ'ଣ? କେତେକ ପଣ୍ଡିତ କୁହନ୍ତି – ରଥ ସମୟରେ ଚୈତନ୍ୟଙ୍କୁ ଭେଟିବାକୁ ତାଙ୍କ ଶିଷ୍ୟମାନେ ବଙ୍ଗଳାରୁ ଆସୁଥିଲେ। ରଥଯାତ୍ରାର ଦିନେ ଦୁଇଦିନ ଆଗରୁ ଗୌଡ଼ୀୟ ବୈଷ୍ଣବମାନେ ଗୁଣ୍ଡିଚାଘର ମାଜେଣା କରିଯାଆନ୍ତି –। ଆଉ ଜଣେ ପଣ୍ଡିତଙ୍କ ମତରେ ଗୁଣ୍ଡିଚାଘରେ ଗୋଟେ ପଥରରେ ଚୈତନ୍ୟଙ୍କର ପାଦଲିପି ଅଛି – ହୁଏତ ଚୈତନ୍ୟଙ୍କୁ ଗୁଣ୍ଡିଚାଘରେ ସମାଧି ଦିଆ ହୋଇଥିଲା।

ଏଥର ବିଶ୍ୱରଞ୍ଜନ ମୁହଁ ଖୋଲିଲେ।

– ଏ ଗୁଣ୍ଡିଚା ମାଜେଣା ଦ୍ୱାରା ଗୁଣ୍ଡିଚାଘରୁ 'ବାବେନାଭୂତ'କୁ ତଡ଼ାହୁଏ ବୋଲି ପୁରୀରେ ଲୋକେ କୁହନ୍ତି। ବୁଝିଲେ ଚାକୁଦା!

– ରଥଯାତ୍ରା ସହ ଚୈତନ୍ୟ ଓ ଗୌଡ଼ୀୟ ବୈଷ୍ଣବଙ୍କର ଘନିଷ୍ଠ ସମ୍ପର୍କରୁ ବୋଧେ ଚୈତନ୍ୟ ରଥଯାତ୍ରା ଦିନ ପୁରୀ ଆସିଥିଲେ ବୋଲି କଥିତ ଅଛି। ବଙ୍ଗାଳୀମାନଙ୍କର ଅଧିକାଂଶ ପଣ୍ଡା ଏଠିକାର ଦଇତାପତିମାନେ। ରଥଯାତ୍ରାବେଳେ ଦଇତାଙ୍କର ଆଧିପତ୍ୟ ଲାଗି ବୋଧେ ବଙ୍ଗାଳିମାନେ ସେମାନଙ୍କର ଯାତ୍ରୀ ହେଇଛନ୍ତି! ତେଣୁ ପ୍ରବାଦ ସବୁ ଗୋଳିଆ ମାଳିଆ ହେଇଯାଇଛି – ଏଇ ଇତିହାସ ଉପରେ ମନ୍ତବ୍ୟ କଲାବେଳେ ଛାତିରେ ହାତରଖି କହିପାରିବ?

–କ'ଣ କିଏ କହିବ ଆଜ୍ଞା! ସେଦିନ କାଗଜରେ ପଢ଼ିଲେନି 'ବୁଦ୍ଧଙ୍କ ବିଷୟରେ'?

ଫନୀ ବାବୁ ପ୍ରଶ୍ନ କଲେ –

– କ'ଣ? ଆମ ସମସ୍ତଙ୍କ ଜିଜ୍ଞାସା।

– ଆନ୍ଧ୍ରପ୍ରଦେଶର ଗଭର୍ଣ୍ଣର ଶ୍ରୀ ଆର୍.ଡି. ଭଣ୍ଡାରେ – ଯିଏ ନିଜେ ଜଣେ ବୌଦ୍ଧ ଏବଂ ବୌଦ୍ଧ ଧର୍ମର ପଣ୍ଡିତ – ତାଙ୍କ ମତରେ ଆଜିଯାଏ ପ୍ରଚଳିତ ଥିବା କିମ୍ବଦନ୍ତୀ ଯେ ସିଦ୍ଧାର୍ଥ – ଶବ, ବୃଦ୍ଧ, ରୋଗୀ ଇତ୍ୟାଦି ମାନସିକ ଦୈନ୍ୟରେ ବିଚଳିତ ହୋଇ ସ୍ତ୍ରୀ, ପୁତ୍ର ଓ ଗୃହତ୍ୟାଗ କରି ସନ୍ନ୍ୟାସୀ ହୋଇଥିବା କଥା ଠିକ୍ ନହେଁ ବରଂ 'ସାଖ୍ୟ' ଓ 'କାଲ୍ୟାନ୍' ନାମକ ଦୁଇ ରାଜ୍ୟ ମଝିରେ ଥିବା ରୋହିଣୀ ନଦୀ ଉପରେ ନିଜର ଆଧିପତ୍ୟ ପାଇଁ ଯେତେବେଳେ ଦୁଇ ରାଜ୍ୟ ଯୁଦ୍ଧ କରିବାକୁ ପ୍ରସ୍ତୁତ ହେଲେ – ସିଦ୍ଧାର୍ଥ ଏଥିରେ ଅସମ୍ମତ ହୋଇଥିଲେ। ଏଥିରେ 'ସାଖ୍ୟ' ରାଜ୍ୟର 'ସଂଘ' ବା ସେ ଯୁଗର ପାର୍ଲ୍ୟାମେଣ୍ଟ୍ ସିଦ୍ଧାର୍ଥଙ୍କୁ ସାବଧାନ କରେଇଥିଲେ ଯେ – ଯୁଦ୍ଧ ନ କଲେ ତାଙ୍କୁ ରାଜ୍ୟରୁ ବହିଷ୍କାର କରାଯିବ ଏବଂ ତାଙ୍କ ପିତାଙ୍କ ସମ୍ପତ୍ତି ବାଜ୍ୟାପ୍ତି କରାଯିବ। ସିଦ୍ଧାର୍ଥ ଏହାର ପ୍ରତିବାଦ

କରି – ଯୁଦ୍ଧ ନକରି ସମାଧାନର ପନ୍ଥା ଖୋଜିବାକୁ ପ୍ରବର୍ତ୍ତେଇ ଯେତେବେଳେ ବିଫଳ ହେଲେ – ସେତେବେଳେ ସେ ଏହି ସବୁ ଦୁଃଖରୁ ତ୍ରାହି ପାଇଁ ଗୃହତ୍ୟାଗୀ ହୋଇଥିଲେ। ବର୍ତ୍ତମାନ କୋଉ କଥାକୁ ସତ ଭାବିବା ?

ଫନୀ ବାବୁ ଦୀର୍ଘଶ୍ୱାସ ନେଇ ପୁଣି ଆରମ୍ଭ କଲେ –

– ଆମେ ଆଜିଯାଏ ମାନି ଆସିଥିବା ଚିରା ଚରିତ ରାମ ଓ ସୀତାଙ୍କ ସଂପର୍କକୁ ସେଦିନ ଡଃ ସୁନୀତି ଚାଟାର୍ଜି କହିଲେ ଯେ ରାମ ଓ ସୀତା ଭାଇ ଭଉଣୀ ଥିଲେ ଏବଂ ଅରଣ୍ୟକୁ ଯାଇ ତାଙ୍କର ବିବାହ ସଂଘଟିତ ହୋଇଥିଲା। ଠିକ୍ ଏଇକଥା ପଣ୍ଡିତ ବିନାୟକ ମିଶ୍ର ତାଙ୍କ 'ଓଡ଼ିଆ ସାହିତ୍ୟର ଇତିହାସ'ରେ ପୃଷ୍ଠା ୫୪ରେ ଲେଖିଛନ୍ତି – "ବୌଦ୍ଧ ଦଶରଥ-ଜାତକ ଅନୁସାରେ ରାମ ଦଶରଥଙ୍କ ପୁତ୍ର ଓ ସୀତା ତାହାଙ୍କର କନ୍ୟା ଅଟନ୍ତି ଏବଂ ଭାଇ ଭଉଣୀ ବନକୁ ଯାଇ ସେଠାରେ ବିବାହ ବନ୍ଧନରେ ପରସ୍ପର ଆବଦ୍ଧ ହୋଇଥିଲେ। ଓଡ଼ିଆ ଶଶୀସେଣା ଗଳ୍ପ ଅନୁସାରେ ଶଶୀସେଣା ଓ ଅହିମାଣିକ୍ୟଙ୍କର ବିବାହ ଅନନ୍ତସିଦ୍ଧ ସମ୍ପାଦନ କରିଥିଲେ। ଅନନ୍ତସିଦ୍ଧ, ସହସ୍ରଶିରା ରାବଣ ଓ ଋଗ୍‌ବେଦର ସହସ୍ରଶୀର୍ଷା ପୁରୁଷ ଦର୍ଶନ ଶାସ୍ତ୍ରର ଅନନ୍ତବାଦ ଅର୍ଥରେ ଗ୍ରହଣ କରାଯାଇ ପାରେ। ଏହି ଅନନ୍ତବାଦ ପ୍ରତିଷ୍ଠିତ ହେବାରୁ ଜନକ ବା ଅତ୍ମାବାଦ ଓ ସନକ ବା ପ୍ରକୃତିବାଦ ସଂପ୍ରଦାୟଙ୍କର ପରସ୍ପର ମିଳାମିଶା ହୋଇ ବିବାହ ବନ୍ଧନ ପ୍ରଚଳିତ ହୋଇଥିଲା ବୋଲି ଅନୁମତି ହୁଏ।" ତେଣୁ କିଏ ସତ କିଏ ମିଛ ଏକଥା କୋଉ ପଣ୍ଡିତ ଛାତିରେ ହାତ ରଖି କହିପାରିବ – ଯାହାର ନିଜର ଡାଏରୀ ନାହିଁ !

– ଆଚ୍ଛା ! ପଣ୍ଡିତ ବିନାୟକ ମିଶ୍ର ଏକଥା ସୁନୀତି ଚାଟାର୍ଜିଙ୍କ ଆଗରୁ ଲେଖିଛନ୍ତି !

ବିଶ୍ୱରଞ୍ଜନ ଆଶ୍ଚର୍ଯ୍ୟ ହେଇ ପଚାରିଲେ।

– ମଲା, ଓଡ଼ିଆ ସାହିତ୍ୟର ଇତିହାସ ପ୍ରକାଶିତ ହୋଇଛି ୧୯୬୨ରେ ଟି।

– ବାସ୍ତବିକ୍ ! ଆମ ଜାତିରେ ଆମ ଲୋକଙ୍କର ଗୁଣର କଦର୍ ଆମେ ଜାଣୁନା !

– ତାଙ୍କର ମୃତ୍ୟୁ ପରେ ସୁଦ୍ଧା ତାଙ୍କ ବହି 'Cult of Jagannath' ଆଜିଯାଏ କେହି ଛାପିଲେ ନାହିଁ।

– ଆରେ ଜାଣିଛ – ତାଙ୍କ ମୃତ୍ୟୁର ଦୁଇଦିନ ଆଗରୁ ସେ କୁଆଡ଼େ ହରି ମିଶ୍ରଙ୍କ ଘରଠିକି ଆସି ସକାଳୁ ସକାଳୁ ପଚାରିଲେ – 'ହରି, ମୁଁ ଶୁଣିଲି ତମେ କହୁଥିଲ ମତେ ଏକାଡେମୀ ପୁରସ୍କାର ମିଳିଛି !' ସେତେବେଳେ ପଣ୍ଡିତ ମିଶ୍ର ପୁରୀ ଜିଲ୍ଲାର ନୟାଗଡ଼ଠାରେ ରହୁଥିଲେ। ମତେ ହରିଭାଇନା କହିଛନ୍ତି – ବୁଝିଲ ? ହରିଭାଇନା ପ୍ରଥମେ ଆଶ୍ଚର୍ଯ୍ୟ ହେଲେ – ତା'ପରେ କହିଲେ – 'ନାଇଁ ଆଜ୍ଞା ! ମୁଁ କହୁଥିଲି ପଣ୍ଡିତ ବିନାୟକ ମିଶ୍ରଙ୍କ ପରି ଜ୍ଞାନୀଙ୍କୁ କେନ୍ଦ୍ରୀ ଅକାଡେମୀ ସମ୍ମାନ କରିବା ଉଚିତ୍ ଥିଲା।' ପଣ୍ଡିତେ କୁଆଡ଼େ ଏକ ଦୀର୍ଘଶ୍ୱାସ ଛାଡ଼ି ଖାଲି କହିଲେ – 'ଓଃ ! ମୁଁ ଅଲଗା ଭାବୁଥିଲି।' ସେ ଫେରିଗଲେ ଏବଂ ଦୁଇଦିନ ପରେ ଇହଧାମ ଛାଡ଼ିଲେ।

ସମସ୍ତେ ନୀରବ ହେଇଗଲେ। ସମସ୍ତଙ୍କ ମନରେ ଯେପରି ଏକ ଛୁରୀକାଘାତ କିଏ କରିଛି।

– ଆପଣମାନେ ଏ ପୁରସ୍କାରକୁ ଏତେ ବଡ଼ କାହିଁକି ମନେ କରନ୍ତି ? ଯାହାଙ୍କ ବିଷୟରେ ଏତେ ଆଲୋଚନା କଲେ – ସିଏ ଅମର ନାଁ ଯୋଉମାନେ ପୁରସ୍କାର ପାଇ ମଧ୍ୟ କେବେ ସମାଜରେ ଆଲୋଚିତ ହୁଅନ୍ତି ନାହିଁ ସିଏ ଅମର ? ମୁଁ ତ କହିବି ବିନାୟକ ମିଶ୍ର ଭାଗ୍ୟବାନ୍। ଆମେ ତାଙ୍କୁ ତାଙ୍କ ମୃତ୍ୟୁ ପରେ ବି ସମ୍ମାନ ଦେଉଛୁ –

ମୋର ମନ୍ତବ୍ୟରେ ସମସ୍ତେ ଯେପରି ଆଶ୍ୱସ୍ତ ହେଲେ।

– ହଁ ! ଅଧିକାରୀଏ ଆପଣ କିଛି କୁହନ୍ତୁ !

– କ'ଣ କହିବି ବାପ ! ଶୁଣୁଛି, ତମେମାନେ ଯାଇହଉ ଟିକେ ଚର୍ଚ୍ଚା କରୁଛ। ନହେଲେ ତ ଯୋଉଠିକି ଗଲେ ଖାଲି – ପଇସା, ଘର, ପିଲା, ଚାକିରୀ, ବ୍ୟବସାୟ ଏଇଥିରେ ସମସ୍ତେ ବ୍ୟସ୍ତ।

– ଆପଣ କୋଉ ମଠରେ ଅଧିକାରୀ ?

– ଅର୍ଜ୍ଜୁନ ଦାସ ମଠ ପୁଅ – ପଥୁରିଆ ସାହିରେ।

– ଅର୍ଜ୍ଜୁନ ଦାସ ପୁଣି କିଏ ?

ବିଶ୍ୱରଞ୍ଜନ ପ୍ରଶ୍ନ କଲେ। ଫନୀ ବାବୁ ଘରକୁ ଚାଲିଯିବେ ବୋଲି ତରତର ହେଉଥିବାର ଜଣାପଡ଼ିଲା। ଖାଇବାବେଳ ହେଇଯାଇଛି। ନଗଲେ ଅସୁବିଧା ହେବ ବୋଲି ବିଶ୍ୱରଞ୍ଜନଙ୍କୁ କହୁଥିଲେ ଏବଂ ବିଶ୍ୱରଞ୍ଜନ ତାଙ୍କୁ ଛାଡ଼ୁ ନଥିଲେ ?

– ହେଃ। କ'ଣ ମ ? ଏମିତି କ'ଣ ଦିନେ ଭାଉଜଙ୍କ ସାଙ୍ଗରେ ଏକାଠି ନ ଖାଇଲେ ବିଗିଡ଼ିଯିବ ?

– ତମେ ତ ବୁଝୁନ !

ଅଧିକାରୀ କିଛି କହିବାକୁ ଆରମ୍ଭ କରିଥିଲେ –

– ଅତିବଡ଼ି ଜଗନ୍ନାଥ ଦାସଙ୍କର ଷୋହଳଜଣ ମୁଖ୍ୟ ଶିଷ୍ୟ – ଷୋହଳଟି ଗାଦି କରିଥିଲେ। ତାଙ୍କରି ଭିତରୁ ପୁଅ ଅର୍ଜ୍ଜୁନ ଦାସ ଜଣେ।

ଫନୀବାବୁ ପୁଣି ଅନୁରୋଧ କଲେ ଚାଲିଯିବାକୁ। ମୁଁ ଉତ୍ସୁକତା ପ୍ରକାଶ କଲି।

– ଫନୀବାବୁ ପ୍ରେମ କରି ବାହା ହେଇଛନ୍ତି କି ନା – ସେ ତେଣୁ ପତ୍ନୀଙ୍କ ଆଦେଶକୁ ଶିରୋଧାର୍ଯ୍ୟ କରିଛନ୍ତି !

ସମସ୍ତେ ହୋ ହୋ ହେଇ ହସି ଉଠିଲେ ବିଶ୍ୱରଞ୍ଜନଙ୍କ ମନ୍ତବ୍ୟରେ।

– ଆରେ ମୁଁ କହୁଛି ପରା ତମେ ଜାଣିନ ! ଏକେତ ଯେତେଟା ସିଗାରେଟ୍ ଟାଣିଲଣି – ସେଥିପାଇଁ ସେ ମୁହଁରୁ ଗନ୍ଧ ବାରି ଯାହା ହବାର ହବ – ତା' ଉପରେ ପୁଣି ନ ଖାଇ ବସିଥିବ ବୋଲି – ମତେ ବି ଆଜି ଅଖିଆ ରଖେଇବ।

– କାହିଁକି ?

ମୁଁ ପଚାରିଲି।

– ସେ ଖାଇବନି – ତାକୁ ମନେଇବାକୁ ଯାଇ ସନ୍ଧ୍ୟା ହୋଇଯିବ।

– ତା'ହେଲେ ଯାଆନ୍ତୁ।

– ନାଇଁ ତମେ ଯିବନି – ଆମ ସାଙ୍ଗେ ଖାଇବ! ହଁ, ବାବାଜୀ ମହାପ୍ରୃ! କହନ୍ତୁ – ବିଶ୍ୱରଞ୍ଜନ କଥା ଛିଡ଼େଇଲେ।

– ଆମ ଗୁରୁ କହୁଥିଲେ ଆମ ମଠରେ ଦୀନକୃଷ୍ଣ ଦାସ ରହିଥିଲେ।

– କୋଉ ଦୀନକୃଷ୍ଣ?

ଫନୀବାବୁଙ୍କ ପ୍ରଶ୍ନ।

– ରସବିନୋଦ, ଜଗମୋହନ ଗୀତ ହେରିକା ଯିଏ ଲେଖିଛନ୍ତି। ତାଙ୍କ ପୋଥି ପରା ଆମ ମଠରୁ ନେଇ ମର୍ତ୍ତ୍ୟ ବୈକୁଣ୍ଠବାଲା କୁଣ୍ଡେଇବେଣ୍ଟ ସାହିର ଭରତ ମହାଜନଙ୍କ ଦାନରୁ ବହି ଛପେଇ ଥିଲେ।

– ହଉ ପଦେ ଦି'ପଦ ଆଜ୍ଞା!

ପାନ ଦୋକାନୀଟି ଏଥର ବଡ଼ ପାଟିରେ ବାବାଜୀଙ୍କୁ ଅନୁରୋଧ କଲା ପୁରୀ ବିଷୟରେ ପଦେ ଦି'ପଦ ତାଙ୍କ ଗୀତରୁ ଶୁଣାନ୍ତୁ –

ମୁଁ ଅନୁରୋଧ କଲି। ମୋ ଅନୁରୋଧରେ ଅଧିକାରୀଙ୍କ ପାକୁଆ ପାଟିରେ ହସ ଚହଟିଲା। ପାନପିକ ତାଙ୍କ ଓଠ କର ଦେଇ ବୋହି ପଡୁଥିଲା।

– ହଇରେ ପାନ ଦେଖା ନାହିଁ – ଆଉ ଗୀତ ବୋଲିବି।

– ଦଉଛି ଆଜ୍ଞା! ଆରମ୍ଭ କରନ୍ତୁ –

ପାନ ଦୋକାନୀଟି ପାନରେ ଚୂନ ଲଗଉ ଲଗଉ ପୁଣି କହିଲା। ବାବାଜୀ ମହାଶୟ ଗଳା ସଫା କରି ଆରମ୍ଭ କଲେ। 'ଜଗମୋହନ ଗୀତ'ର ପ୍ରଥମ ଛାନ୍ଦ।

– ଏଇ ଗୀତ ଗୁଜ୍ଜରୀ ରାଗରେ ଗାଇବା କଥା –

ଅଶେଷ କୋଟି ବ୍ରହ୍ମାଣ୍ଡ ମଧ୍ୟେ ଉତ୍ତମ
ଏକ କ୍ଷେତ୍ର ଅଛି ନାମ ପୁରୁଷୋତ୍ତମ।
ବ୍ରତ ଖଣ୍ଡ ଶେଷ ସିନ୍ଧୁ ଉତ୍ତର ଦେଶେ
ପଞ୍ଚକ୍ରୋଶ ଶଙ୍ଖ ଆକୃତିରେ ପ୍ରକାଶେ।
କେ କହିବ ବଚନେ ସେ କ୍ଷେତ୍ର ମହିମା
ଯମ ନ ଲଙ୍ଘଇ ଯେଉଁ ମୁକତି ସୀମା।
ଅଗତି ଲୋକର ସେହି ପରମ ଗତି
ଅନେକ ବଚିତ୍ର କଥା ତହିଁରେ ସ୍ଥିତି।
କଳହ କଲେ ବିଷ୍ଣୁଙ୍କୁ ସ୍ତୁତି ପରାଏ
ଗମନ କରନ୍ତେ ପରିକ୍ରମାକୁ ପାଏ।

ଶୋଇଥିଲେ ଯହିଁ ଦଣ୍ଡ ପ୍ରଣାମ ସମ
ଆମିଷ ଆହାର କଲେ ହବିଷ କର୍ମ।

ବୁଝିଲ ପୁଅ। ଏପରି କ୍ଷେତ୍ର ହେଉଛି ପୁରୀ। ତା' ବିଷୟରେ ମୁଁ ଛାର କି କଥା କହିବି? ଏଠିକା ଦିଅଁଙ୍କ କଥା? କବି ପରା ନିଜେ କହିଲେ –

ସହିଷ୍ଣୁ ପଣକୁ ଶସ୍ତ୍ରଘାତ ସନ୍ନତ
ଅବିରତେ ହୋଇଥାନ୍ତି ମଉନ ବ୍ରତ।
କହିଲେ କିକି ସରିବ ତାଙ୍କ ଚରିତ
ବିଚାରିଲେ ବୃକ୍ଷେ ଅଛି ବୈଷ୍ଣବ ମତ।

ଆମ ଚାରିପଟେ ସେତେବେଳକୁ ବେଶ୍ ଲୋକ ଜମି ଗଲେଣି। କିଏ ଜଣେ ସେହି ଗହଳିରୁ ବାବାଜୀଙ୍କୁ ପ୍ରଶ୍ନକଲା – ଆଜ୍ଞା ବୃକ୍ଷରୁ କେମିତି ବୈଷ୍ଣବ ମତ?

– ବିଷ୍ଣୁ କିଏ କି? ବାବାଜୀ ଓଲଟା ପ୍ରଶ୍ନକଲେ। ପୁଣି ଆରମ୍ଭ କଲେ –

– ବିଷ୍ଣୁଙ୍କ ପରିଚୟ ଗଙ୍ଗାଙ୍କ ପରିଚୟରୁ ମିଳିବ। ଗଙ୍ଗାଙ୍କ ବିଷୟର କଥା ଅଛି –

"ଆଦ୍ୟ ଗୋଦାବରୀ ଗଙ୍ଗା ଦ୍ୱିତୀୟା ଚ ପୁନଃ ପୁନା
ତୃତୀୟା କଥିତା ସେବା ଚତୁର୍ଥୀ ଜାହ୍ନବୀ ସ୍ମୃତା
କାବେରୀ ଗୋମତୀ କୃଷ୍ଣା ବ୍ରହ୍ମୀ ବୈତରଣୀ ତଥା
ବିଷ୍ଣୁପାଦାଗ୍ର ସମ୍ଭୁତା ନବଧା ଭୂମି ସଂସ୍ଥିତା।"

ବୁଝିଲ ବାବୁ! ଗଙ୍ଗା ବିଷ୍ଣୁଙ୍କ ପାଦାଗ୍ରରୁ ଜନ୍ମ ହୋଇ ନଅ ଆକୃତିରେ ଭୂମିରେ ଅଛନ୍ତି। ଆକାଶକୁ 'ବିଷ୍ଣୁପଦ' କୁହାଯାଏ। ବିଷ୍ଣୁଙ୍କ ପାଦ ଆକାଶରେ ଅଛି ଓ ଅଶ୍ୱତ୍ଥ ବୃକ୍ଷର ମୂଳ ଊର୍ଦ୍ଧ୍ୱରେ ଅଛି ବୋଲି କୁହାଯାଇ ଏହି ବୃକ୍ଷର ଉଦାହରଣ ଦ୍ୱାରା ପୁରୁଷୋତ୍ତମ ଯୋଗ ବର୍ଣ୍ଣନା କରାଯାଇଛି – ଗୀତାର ପଞ୍ଚଦଶ ଅଧ୍ୟାୟରେ। ଅଶ୍ୱ ପ୍ରକୃତିର ଲୋକ ଅଶ୍ୱତ୍ଥ ବୃକ୍ଷ ମୂଳରେ ବାସ କରୁଥିବାର କଥା 'ତୈତ୍ତରୀୟ ବ୍ରାହ୍ମଣ'ରେ ବର୍ଣ୍ଣନା ଅଛି। ବୀଜ ନ ପଡ଼ିବା ସ୍ଥାନରେ ଅଶ୍ୱତ୍ଥ ବୃକ୍ଷ ଜନ୍ମୁଥିବାରୁ ଶୂନ୍ୟରୁ ସୃଷ୍ଟିର ଉତ୍ପତ୍ତି ବୋଲି କଳ୍ପନା କରାଯାଇଛି। ଏହି ଶୂନ୍ୟବାଦୀ ଅଶ୍ୱ ପ୍ରକୃତିର ଲୋକେ ବିଶ୍ୱକୁ ବ୍ୟାପିଥିବା ବିଷ୍ଣୁ ଅର୍ଥାତ୍ 'ପ୍ରବୃତ୍ତି'ମାନଙ୍କୁ ଚରିତାର୍ଥ କରିଥିଲେ। ଏମାନଙ୍କ ଠାରୁ ବୈଷ୍ଣବ ଧର୍ମର ଉତ୍ପତ୍ତି। ଗୀତାର ପଞ୍ଚଦଶ ଅଧ୍ୟାୟରେ ଯେଉଁ "ତମେବ ଚାଦ୍ୟଂ ପୁରୁଷଂ ପ୍ରପଦ୍ୟେ, ସତଃ ପ୍ରବୃତ୍ତିଃ ପ୍ରସ୍ଥତା ପୁରାଣୀ" – ଅଛି ତାକୁ ସବୁ ପଢ଼ିଛଟି?

ମୁଁ ମୁଣ୍ଡ ହଲେଇ ନ ପଢ଼ିଥିବାର ସୂଚନା ଦେଲି। ବୃଦ୍ଧ ପୁଣି ଥରେ ଆରମ୍ଭ କଲେ –

– ଏଇ ଅଶ୍ୱ ପ୍ରକୃତିର ଲୋକଙ୍କ ଔରସରୁ ଉକ୍ତ ନଅ ନଦୀର ଉପତ୍ୟାକାରେ ରହୁଥିବା ଆଦିବାସୀ ରମଣୀଙ୍କ ଗର୍ଭରୁ ଯେଉଁ କୁମାରୀମାନେ ଜାତ ହୋଇଥିଲେ ସେମାନଙ୍କୁ ଗଙ୍ଗା କୁହାଯାଉଥିଲା। ବୃକ୍ଷ ପୂଜକ ଅଶ୍ୱ ଜାତିର ଲୋକେ ବୈଷ୍ଣବ ଥିବାରୁ ଜଗନ୍ନାଥ କାଠରେ ତିଆରି ହେଇଛନ୍ତି।

– ବୈଷ୍ଣବମାନେ ଆଦ୍ୟରୁ କ'ଣ ଶୂନ୍ୟବାଦୀ ଥିଲେ ? ଅଧ୍ୟାପକ ମହାନ୍ତି ଏଥରକ ବେଶ୍ ଉତ୍ସାହିତ ଥିବାପରି ପ୍ରଶ୍ନକଲେ । ଘରକୁ ଯିବା କଥା ଆପାତତଃ ସେ ସେତେବେଳକୁ ବୋଧେ ଭୁଲି ଯାଇଥିଲେ ।

– ଖାଲି ବୈଷ୍ଣବ ବାବୁ ? ସାଂଖ୍ୟ ଦର୍ଶନର 'ସାଂଖ୍ୟ' ଶବ୍ଦର ଅର୍ଥ କ'ଣ ? 'ସଂ' ବା ବ୍ରହ୍ମାଙ୍କ ଆଡ଼କୁ 'ଖ' ବା ଶୂନ୍ୟ । ଏଣୁ ସାଂଖ୍ୟବାଦୀମାନେ ଶୂନ୍ୟବାଦୀ । ପୁଣି 'ସିଦ୍ଧ'ମାନଙ୍କ ଭିତରେ କପିଳ ଶ୍ରେଷ୍ଠଥିଲେ ବୋଲି ଗୀତାରେ କୁହାଯାଇଛି । ଶୂନ୍ୟବାଦୀ ହୋଇ ଯେଉଁମାନେ ସଂଯତେନ୍ଦ୍ରିୟ ଥିଲେ, ସେମାନଙ୍କୁ 'ସିଦ୍ଧ' କୁହାଯାଉଥିଲା । ସମାଜର ସେବା ବା କଲ୍ୟାଣ ନିମନ୍ତେ ଇନ୍ଦ୍ରିୟ ତୃପ୍ତ କରିବା ପାଇଁ ଯେଉଁମାନେ ଉପଦେଶ ଦେଉଥିଲେ, ସେମାନେ ଶୈବ ନାମରେ ଅଭିହିତ ହେଉଥିଲେ । ଶିବ ସଂହିତାରୁ ଜଣାଯାଏ, ଶୈବମାନେ ଶୂନ୍ୟବାଦୀ ଥିଲେ । ବୌଦ୍ଧଧର୍ମ କପିଳଙ୍କ ସାଂଖ୍ୟ ଦର୍ଶନରୁ ଉଦ୍ଭୂତ ହୋଇଥିଲା । ତେଣୁ ବୌଦ୍ଧମାନେ ମଧ୍ୟ ଶୂନ୍ୟବାଦୀ । ଆମ ମୂଳ ପଞ୍ଚସଖାଙ୍କୁ ପରା ଏଇ ଶୂନ୍ୟବାଦୀ ଦର୍ଶନଲାଗି – ପ୍ରଚ୍ଛନ୍ନ ବୌଦ୍ଧ ବୋଲି କହୁଥିଲେ ! ନିତି ବଳରାମ ଦାସଙ୍କ 'ବ୍ରହ୍ମାଣ୍ଡ ଭୂଗୋଳ'ରେ ସେ କ'ଣ ଲେଖିଲେ –

ଯେ କାଳେ ନଥିଲା ସଂସାର । ନଥିଲେ ଚନ୍ଦ୍ର ଦିବାକର ॥
× × ×
ସେକାଳେ ଶୂନ୍ୟମୋର ରୂପ । ଏଅନ୍ତେ ଗଲା କୋଟିକଳ୍ପ ॥
ବ୍ରହ୍ମାଣ୍ଡ ମୋର ଗର୍ଭେ ନେଇ । ରଖିଲ ବ୍ରହ୍ମରୂପ ହୋଇ ॥
ସୃଷ୍ଟି କରଣେ ବାଞ୍ଛା ହେଲା । ମୋ ଅଙ୍ଗୁ ବିନ୍ଦୁ ଉଛୁଳିଲା ॥
ସେ ବିନ୍ଦୁ ତ୍ରୟଭାଗ ହେଲା । ତ୍ରିବୀଜ ରସ ବୋଲାଇଲା ॥
× × ×
ତ୍ରୟବୀଜରୁ ତ୍ରୟ ଦେବ । ହୋଇଲେ ବ୍ରହ୍ମା ବିଷ୍ଣୁ ଶିବ ॥
ଏ ତିନି ମୂର୍ତ୍ତିଠାରୁ ପୁଣ । ଉତ୍ପତ୍ତି ହେଲା ରାମ ନାମ ॥
ନାମରୁ ଭାଗବତ ହେଲା । ତେଣୁ ଦ୍ୱିଗୁଣ ବୋଲାଇଲା ॥
× × ×
ମାତା ପିତାଙ୍କ ରଜବୀଜ । ତେଣୁ ହୋଇଲା ମହାତେଜ ॥
ରଜୋବୀଜକୁ ଭାଗ କଲା । ଏମନ୍ତେ ଭାଗବତ ହେଲା ॥

ଗୀତାର ଓଲଟ ବୃକ୍ଷ ଧାରାରେ ବଳରାମ ଦାସ ସୃଷ୍ଟିର ଆଦ୍ୟକୁ ଶୂନ୍ୟ ବା ଆକାଶ କହିଛନ୍ତି । ଏହି ଅଶ୍ୱତ୍‌ଥ ବୃକ୍ଷର ପୂଜନ ଇନ୍ଦ୍ରିୟନିରୋଧନକରି ଅନିରୁଦ୍ଧ ହୋଇଥିଲେ । ତାଙ୍କ ଶ୍ରୀମଦ୍ ଭାଗବତ୍‌ଗୀତାର ଅଷ୍ଟମ ଅଧ୍ୟାୟରେ 'ତାରକ ବ୍ରହ୍ମଯୋଗ' ବର୍ଣ୍ଣନା ଅଛି । ସାଂଖ୍ୟ ଦର୍ଶନର ଆଧ୍ୟାତ୍ମିକ, ଆଦିଭୌତିକ ଓ ଅଧିଦୈବିକ ତ୍ରିତାପକୁ ତ୍ରିକର୍ମ ରୂପରେ ବର୍ଣ୍ଣନା କରି ବଳରାମ ଦାସେ କ'ଣ ଲେଖିଲେ –

"ଜୀବ ଭାବ ଯେଉଁ ଧର୍ମ ବୋଲି ଅଧି ଅତ୍ମା କର୍ମ
ପ୍ରାଣୀଙ୍କ ସୃଷ୍ଟି କରିବା କରମ ବୋଲି
ଦେହାଦି କ୍ଷଏ ପଦାର୍ଥ ଏହା ବୋଲି ଅଧିଭୂତ
ଅଧି-ଭଉତିକ ଅଧିଷ୍ଠାନ କହିଲି।
ଦେହଧାରି ମାନଙ୍କର ଅଧିଯଜ୍ଞର ଭିତର
ମରଣେ ସୁମରି ମୋତେ ଯେ ଦେହ ଛାଡ଼ି
ସେ ମୋର ଭାବ ଘେନଇ ଏଥିରେ ସଂଶୟ ନାହିଁ
ଆରକ କଥାଏ ତୋତେ କହଇ ବଢ଼ି।"

ବୌଦ୍ଧମାନେ ଭାବନ୍ତି ମୃତ୍ୟୁ ବେଳକୁ ମନର ଯହିଁରେ ଆସକ୍ତି ଥିବ, ଭବିଷ୍ୟତ ଜନ୍ମରେ ସେହି ଆସକ୍ତି ଅନୁସାରେ ଜନ୍ମ ଗ୍ରହଣ କରିବ। ଜୀବନରେ ବିଷୟାସକ୍ତି ହୋଇଥିଲେ ମୃତ୍ୟୁ କାଳକୁ ବିଷୟାସକ୍ତି ଛାଡ଼ିବ ନାହିଁ।

ଅଧ୍ୟାପକ ଚକ୍ରବର୍ତ୍ତୀ – ଯିଏ ଏତେବେଳ ଯାଏଁ ଚୁପ୍ ହେଇ ଶୁଣୁଥିଲେ (ସେ ଓଡ଼ିଆ ବୁଝି ପାରନ୍ତି – ପଢ଼ି ପାରନ୍ତି ମଧ୍ୟ। ପିଲାବେଳେ ପୁରୀ ଜିଲ୍ଲା ସ୍କୁଲର ଛାତ୍ର ଥିଲେ। ତାଙ୍କ ବାପା ପୁରୀରେ ଚାକିରୀ କରୁଥିଲେ) ପ୍ରଶ୍ନ କଲେ – ତାହେଲେ ବଳରାମ ଦାସ ଚୈତନ୍ୟଙ୍କର ଶିଷ୍ୟ ନଥିଲେ ?

– ବାବୁ! ଚୈତନ୍ୟ ପୁରୀକି ଆସିବା ଆଗରୁ ବଳରାମ ଦାସ ଖାଲି ପୁରୀରେ ନୁହଁ ସାରା ଓଡ଼ିଶାରେ ଜଣେ ପ୍ରସିଦ୍ଧ କବି। ତାଙ୍କର 'ଦାଣ୍ଡି ରାମାୟଣ' ଗାଁ ଗଣ୍ଡା, ପୁର ପଲ୍ଲୀରେ ଦାଣ୍ଡରେ ବୋଲା ହଉଛି ଆଉ ତାଙ୍କ 'ଲକ୍ଷ୍ମୀପୁରାଣ' ଘରେ ଘରେ ମାଇପିମାନେ ପଢୁଛନ୍ତି। ବଳରାମ ଦାସ ତାଙ୍କ ନିଜ ଲେଖାରେ କୋଉଠି ବି ଚୈତନ୍ୟଙ୍କ କଥା ଲେଖି ନାହାନ୍ତି। ପରଯୁଗର କବିମାନେ 'ଜଗନ୍ନାଥ ଚରିତାମୃତ', 'ଚୈତନ୍ୟ ଚରିତାମୃତ' ବା ଅନ୍ୟ ଚରିତମାନଙ୍କରେ ସିନା ତାଙ୍କୁ ଚୈତନ୍ୟଙ୍କ ଶିଷ୍ୟ ବୋଲି ଲେଖିଥିଲେ – ନହେଲେ ରାମଭକ୍ତ ବଳରାମ ଦାସ ଚୈତନ୍ୟଙ୍କର ଚେଲା କାହିଁକି ହୁଅନ୍ତେ କହିଲ ଭଲା ?

ଫନୀବାବୁ ଏଥର ଚୁପ୍ ରହି ପାରିଲେନି।

– ଚୈତନ୍ୟ ଭକ୍ତି ମାର୍ଗରେ କୀର୍ତ୍ତନରେ ଭାବ ବିହ୍ୱଳ ହୋଇ ଈଶ୍ୱର ତନ୍ମୟତା ଲାଭ କରିବାର ପନ୍ଥା ଦେଖେଇ ଥିଲେ କିନ୍ତୁ ବଳରାମ ଦାସ ତ ପବନ ନିରୋଧି ଈଶ୍ୱରଙ୍କୁ ଉପଲବ୍ଧି କରିବା ପାଇଁ ଉପଦେଶ ଦେଉଥିଲେ।

ପାନ ଦୋକାନଟି ଏଥର ପାନ ଚାରିଖଣ୍ଡ କାଗଜରେ ଗୁଡ଼େଇ ଅଧିକାରୀଙ୍କ ଆଡ଼କୁ ବଢ଼େଇ ଦଉ ଦଉ – ଅଧ୍ୟାପକ ଚକ୍ରବର୍ତ୍ତୀ ଆମ ସମସ୍ତଙ୍କୁ ଖାଇବାକୁ ଯିବାକୁ ଡାକୁଥିଲେ। ମୁଁ ଅଧିକାରୀଙ୍କୁ ନମସ୍କାର କରି ବାହାରିଲି। ଗହଳି ବି ଭାଙ୍ଗି ଆସିଲା।

ଅଧ୍ୟାପକ ଚକ୍ରବର୍ତ୍ତୀ, ଫନୀ ବାବୁ, ବିଶ୍ୱରଞ୍ଜନ ଓ ମୁଁ ବଡ଼ ଦାଣ୍ଡରେ ସେଇ ଯାତ୍ରୀଙ୍କ ଗହଳି ଭିତରେ ଆଗର ଏକ ହୋଟେଲ ଆଡ଼େ ବଢୁଥିଲୁ। ଆକାଶରେ ବୁଦୁବୁଦୁକିଆ ମେଘ। ପବନ ପିଟୁଛି। ଖରା ଜଣା ପଡୁନି।

ବଡ଼ଦାଣ୍ଡରେ ଚାଲିବାରେ ଏକ ଆନନ୍ଦ ଅଛି। ସେ ଆନନ୍ଦର ବର୍ଣ୍ଣନା କରିବା କାହାରି ପାଇଁ ହୁଏତ ସମ୍ଭବ ନୁହେଁ – ହୃଦୟଙ୍ଗମ କରିବା କଥା ଯାହା। ହୋଟେଲଟିଏ ନିକଟେଇ ଯାଉଛି ବୋଲି ଅଧ୍ୟାପକ ବିଶ୍ୱରଞ୍ଜନ ସୂଚନା ଦେଲେ। ତାଳପଟିର ଛପରକରା କେଇଟା ଟିଣ ଘେରା ଦୋକାନ। ସାମ୍ନାରେ ଦିଟା ଲମ୍ବା ବେଞ୍ଚ ଓ ଗୋଟେ ଲମ୍ବା ଟେବୁଲ। ଅଧ୍ୟାପକ ଚକ୍ରବର୍ତ୍ତୀ ଭିତରକୁ ଯିବାକୁ ଅମଙ୍ଗ।

– ଏଇଠି ଆଗେ ବସ୍‌ଷ୍ଟାଣ୍ଡ ଥିଲା। ସେତିକି ବେଳର ଉଠା ଦୋକାନ ସବୁ। କିନ୍ତୁ ଖାଇବା ଭଲ ହୁଏ। ଅଧ୍ୟାପକ ମହାନ୍ତି ଏଥର ମୁହଁ ଖୋଲିଲେ। ତାଙ୍କର ବ୍ୟସ୍ତତା ବଢ଼ି ଯାଇଥିଲା ଘରକୁ ଯିବା ପାଇଁ। ବିଶ୍ୱରଞ୍ଜନ ତାଙ୍କୁ ଯିବାକୁ ଛାଡ଼ି ଦେଲେ। ଆମଠୁ ବିଦାୟ ନେଲେ ସେ।

ବାଁ କରରେ ଏକ ବଙ୍ଗୀୟ ଢ଼ାଞ୍ଚାରେ ତିଆରି ସୁ ଦୃଶ୍ୟ ମନ୍ଦିର। ମୋ ଚାହିଁବାରେ ଅଧ୍ୟାପକ ଚକ୍ରବର୍ତ୍ତୀ ବାକ୍ୟ ଆରମ୍ଭ କଲେ –

– ଏଇଟା ପଟିଆ ରାଣୀଙ୍କ ନାମରେ ନାମିତ। ଏବକାର ମନ୍ଦିର, ତେବେ ଦେଖିବାକୁ ସୁନ୍ଦର। ଭୋକ ନ ଲାଗୁଥିଲେ ଆମେମାନେ ହୁଏତ ସେଠିକି ଯିବାକୁ ମୁଁ ଅନୁରୋଧ କରିଥାନ୍ତି। କିନ୍ତୁ ସେତେବେଳେ ନୁହଁ। ଚାଲ ଚାଲ ହେଇ ଆମେ ଏକ ଚୌରାହାରେ ଉପସ୍ଥିତ ହୋଇଥିଲୁ।

– ଏଇ ଛକକୁ କହନ୍ତି ବଡ଼ଦ୍ୱାର। ଏକ ସମୟରେ ପୁରୀର ବଡ଼ଦ୍ୱାର। ସେଇ ଦିଗ ଦେଇ ଯେଉଁ ରାସ୍ତା ତା' ନରେନ୍ଦ୍ର ପୁଷ୍କରିଣୀ ବା ଚନ୍ଦନ ପୋଖରୀ ଦେଇ ଅଠରନଳା ଉପରକୁ ଛାଲି ଯାଇଛି। ଆମେ ନରେନ୍ଦ୍ର ପରେ ଯିବା। ବାଁ ପଟର ରାସ୍ତାଟି ଦଇତାପଡ଼ା ସାହି। ମ୍ୟୁନିସିପାଲ ମାର୍କେଟ୍ ଦେଇ କଲେଜ ରାସ୍ତାରେ ରେଳ ଷ୍ଟେସନକୁ ଯାଉଛି। ଏଇ ଦଇତାପଡ଼ା ସାହିରେ ଅନାମଙ୍କ ଆଡ୍‌ଡା।

– ହୋଟେଲ କାହିଁ ?

ଅଧ୍ୟାପକ ଚକ୍ରବର୍ତ୍ତୀଙ୍କ ପ୍ରଶ୍ନ।

– ଏଇ ସାମ୍ନାରେ। ଏ ହୋଟେଲର ମାଲିକ ଥିଲେ ଭାଲୁ ବାବୁ। ଏ ଅଞ୍ଚଳର ଯାବତ୍ ଜୀବନ ମ୍ୟୁନିସିପାଲଟି କାଉନ୍‌ସିଲର ସେ ଥିଲେ। ଓଡ଼ିଶାର ସୀମା ଆନ୍ଦୋଳନ ବେଳେ ଯେଉଁ କେତେଜଣ ନିର୍ଯ୍ୟାତନା ଭୋଗ କରିଥିଲେ – ସେମାନଙ୍କ ଭିତରୁ ଭାଲୁ ବାବୁ ଥିଲେ ଅନ୍ୟତମ। ପାଞ୍ଚହତା ମର୍ଦ୍ଦ – ମୁହଁରେ ତାଙ୍କର ବଡ଼ ବଡ଼ ବାଘୁଆ ନିଶ ଥିଲା। ଜେଲ୍‌ରେ ପୁଲିସିବାଲା ତାଙ୍କ ନିଶ କାଟି ଦେଇଥିଲେ – 'ଏଇନେ ଷଢ଼େଇକଳା – ଏଇନେ ଖରସୁଆଁ' ବୋଲି ଆମେ ପିଲାବେଳେ ଶୁଣିଥିଲୁ।

– ଆଚ୍ଛା। ତା'ହେଲେ ତ ଏଇ ହୋଟେଲରେ ଖାଇବା।

– ଭାଲୁ ବାବୁ ଯେଉଁଦିନ ପ୍ରାଣ ତ୍ୟାଗ କଲେ – ସେଦିନ ମାର୍କେଟ ମନକୁ ମନ ବନ୍ଦ ହେଇ ଯାଇଥିଲା। ତାଙ୍କ ଶବଯାତ୍ରାରେ ଯେଉଁ ଲୋକ ବାବା!

– କିଏ ବିଶ୍ୱରଞ୍ଜନ।

କାହାର ଡାକରେ ସମସ୍ତେ ଘୂରି ଚାହିଁଲୁ। ସେଇ ଅଧ୍ୟାପକ ଦ୍ୱୟ ଯାହାଙ୍କଠୁ ଉତ୍ତର ପାଇଥିଲି ଅନାମ। ସେମାନଙ୍କ ସହ ଆଉ ଜଣେ ଯୁବକ ମଧ୍ୟ। କେଶ ରାଶୀ ଟିକେ ପତଳା ହେଇ ଆସିଛି। ହାତରେ ଏମରାଲ୍‌ଡ ଲଗା ଦୁଇଟା ବଡ଼ ମୁଦି। ଧଳା ଷ୍ଟ୍ରେଚ୍ ପ୍ୟାଣ୍ଟ ଓ ଛକି ଛକି କନାର ହାୱାଇନ୍ ପିନ୍ଧା। ମୁଖରେ କିନ୍ତୁ ବେଶ୍ ପିଲାଳିଆମି ହସ ଧାରେ ଲାଗି ରହିଛି। ସେମାନେ ଆମର ନିକଟେଇ ଆସିଥିଲେ।

– ପରିଚୟ କରେଇ ଦିଏ ୟେ ହେଲେ ଅଧ୍ୟାପକ ହରିହର ମିଶ୍ର – କବି, ନାଟ୍ୟକାର। ୟେ ହେଲେ ଅଧ୍ୟାପକ ଗୌର ପଟ୍ଟନାୟକ – ଇନ୍‌ଷ୍ଟିଚୁ୍ୟଟ୍ ଅଫ୍ ମାସ୍ କମ୍ୟୁନିକେସନ, ଦିଲ୍ଲୀରେ ବର୍ତ୍ତମାନ ଛାତ୍ର – ଆଉ ୟେ ଆଡ୍‌ଭୋକେଟ୍ ସତ୍ୟ ସିଂ। ରାଜନୀତି କରନ୍ତି। ସମସ୍ତେ ଅନାମ ଚେତନାରେ ବିଶ୍ୱାସ କରନ୍ତି। ଆଉ ଏମାନେ ହେଲେ . . .

ବିଶ୍ୱରଞ୍ଜନ ଆମମାନଙ୍କର ପରିଚିତ ହେଲେ।

– ଆଉ ଭାଇନା! ଆଡ୍‌ଡାରୁ ଆସିଲେ?

– ପୁରୀକୁ ଆସିଲେ – ଆଗ ମୁଁ ଟିକେ ସେଠିକି ଯାଏ। ତା'ଛଡ଼ା ମଧୁବାବୁ ବି ସେଇଠି ଅଛନ୍ତି। ସେଇଠି ସତ୍ୟ ବି ମିଳିଗଲା। ସକାଳୁ ତ ସତ୍ୟ ଦେଖା ମିଳେନି। ଭାଗ୍ୟକୁ . . .

– ଯାଃ ଯାଃ। ସତ୍ୟ ସିଂ କଥା ଉଡ଼େଇବାକୁ ଚେଷ୍ଟା କଲେ।

– ଆସନ୍ତୁ। ଖାଇବାକୁ ଯିବା। ଅଧ୍ୟାପକ ଚକ୍ରବର୍ତ୍ତୀଙ୍କ ଅନୁରୋଧ।

– ନାଇଁ ଆଜ୍ଞା! ଆମେମାନେ ଅନାମ ମଠରେ ଖାଇ କରି ଆସିଛୁ। ତେବେ ଆପଣମାନଙ୍କ ସହ ବସିବା। ଖାଇବୁନି କିନ୍ତୁ। କଥାଭାଷା ଖାଲି ଯାହା . . .

– ମୁଁ ତା'ହେଲେ ଯାଉଛି। ବିଶ୍ୱରଞ୍ଜନ ସମସ୍ତଙ୍କଠୁ କ୍ଷମା ଚାହିଁଲେ। ଘରେ ଭାଇ,

ଭଉଣୀମାନେ ଅପେକ୍ଷା କରିଥିବେ। ପରେ ଭେଟିବାର ଜବାବ ଦେଇ ସେ ତାଙ୍କ ସାଇକେଲରେ ଉଠିଲେ। ହୋଟେଲଟି ଭିତରେ ପାଦ ଦଉ ଦଉ ଆମେ ଠିକ୍ ବୁଝି ପାରୁଥିଲୁ – କୌଣସି ଏକ ଗ୍ରାମ୍ୟ ବସ୍‌ଷ୍ଟାଣ୍ଡର ହୋଟେଲ ଛଡ଼ା ଏହା ଅନ୍ୟ କିଛି ନୁହେଁ। ଭାଲୁ ବାବୁ ବ୍ୟକ୍ତିଗତ ଜୀବନରେ ଯେତେ ବି ଲୋକପ୍ରିୟ ହେଇଥାନ୍ତୁ ନା କାହିଁକି ସେ ତାଙ୍କ ହୋଟେଲଟିକୁ ବୋଧେ ଲୋକପ୍ରିୟ କରେଇବାକୁ ଚେଷ୍ଟା କରି ନାହାନ୍ତି।

ବସୁ ବସୁ ଅଧ୍ୟାପକ ମିଶ୍ର ଚକ୍ରବର୍ତ୍ତୀଙ୍କୁ ପ୍ରଶ୍ନ କଲେ ତାଙ୍କ ଗବେଷଣା ବିଷୟରେ – ଲୋକେ କାହିଁକି ଏକ ତୀର୍ଥ ସ୍ଥାନକୁ ଆସନ୍ତି ତା'ର ସାମାଜିକ, ଅର୍ଥନୈତିକ ଓ ନୈତିକ ପ୍ରଭାବ କ'ଣ ପଡ଼େ ଇତ୍ୟାଦି।

ଭାତରେ ମାଛ ତରକାରୀ ଗୋଳେଇ ପ୍ରଥମେ କେଇ ଗୁଣ୍ଡା ଖାଇବା ପରେ ଏବଂ ମାଛଟା ଯେ ରୋହି ଜାଣିବା ପରେ ଅଧ୍ୟାପକ ଚକ୍ରବର୍ତ୍ତୀଙ୍କ ମୁହଁରେ କିପରି ଏକ ତୃପ୍ତି ଆସିଥିବାର ମୁଁ ଲକ୍ଷ୍ୟ କରୁଥିଲି।

– ଅନ୍ୟମାନେ କ'ଣ କହିଛନ୍ତି ସେଇଠୁ ଆରମ୍ଭ କରେ। Burton Steinଙ୍କ ମତରେ ଏକ ତୀର୍ଥ ସ୍ଥାନ ଅର୍ଥନୈତିକ କାରଣରୁ ଗଢ଼ିଉଠେ। ଯଥା – ଗୋଟେ ଦେବତାକୁ ନେଇ ତାଙ୍କର ପୂଜକମାନେ ବିଭିନ୍ନ ପ୍ରଚାର କରି ଲୋକଙ୍କୁ ଆକର୍ଷିତ କରନ୍ତି। ଲୋକେ ଆସିଲେ କେତେକ ବ୍ୟବସାୟୀ ମଧ୍ୟ ବ୍ୟବସାୟ କରିବାକୁ ଆସନ୍ତି – ସେମାନେ ମଧ୍ୟ ପ୍ରଚାର କରନ୍ତି। ଦେବତାର ମହାତ୍ମ୍ୟ ଯେତିକି ବଢ଼େ ଲୋକେ ମଧ୍ୟ ସେତିକି ବେଶି ଆସନ୍ତି। ଧୀରେ ଧୀରେ myth ଗଢ଼ିଉଠେ ଏବଂ କେବଳ ଏଇ ପ୍ରଚାର ଫଳରେ କୌଣସି ଏକ ତୀର୍ଥ ସ୍ଥାନ ବଡ଼ ହେଇଯାଏ। ଏଥିରେ ବେଶି ଫାଇଦା ପାଆନ୍ତି ସେଇ ପଣ୍ଡା ଓ ବ୍ୟବସାୟୀମାନେ। ତେଣୁ ତୀର୍ଥ ସ୍ଥାନର ମୂଳ ଭିତ୍ତି ଅର୍ଥନୈତିକ ବୋଲି ସେ ଶେଷ ବାକ୍ୟ ଦେଲେ।

ଅଭେଦାନନ୍ଦ ଭାରତୀ, ବିଦ୍ୟାର୍ଥୀ Milton Singer ଓ David Sophen ଇତ୍ୟାଦି କିନ୍ତୁ Burtonଙ୍କ ସହ ଏକମତ ନୁହନ୍ତି। ସେମାନଙ୍କ ମତରେ ପ୍ରତ୍ୟେକ ତୀର୍ଥ ସ୍ଥାନ ଏକ ଏକ ସାଂସ୍କୃତିକ ପୀଠସ୍ଥଳ। ସେହି ସଂସ୍କୃତିର ଆକର୍ଷଣ ଯାତ୍ରୀଙ୍କୁ ସେଠାକୁ ଆଣେ। ବ୍ୟବସାୟ ଓ ଅର୍ଥନୈତିକ ବ୍ୟାପାର ଗହଳି ସହ ଜଡ଼ିତ। ତେଣୁ ଗହଳିରୁ ବ୍ୟବସାୟ – ବ୍ୟବସାୟ ଲାଗି ତୀର୍ଥ ନୁହେଁ।

Red Field, Cohn ଏବଂ Srinibas ଇତ୍ୟାଦି ଗବେଷଣା କରି କହିଲେ ଯେ ତୀର୍ଥସ୍ଥଳୀ ସବୁର ଏକ ସାମାଜିକ ମୂଲ୍ୟବୋଧ ଅଛି। ତୀର୍ଥ ସ୍ଥାନ ସବୁ ପରମ୍ପରାକୁ ଜୀବନ୍ତ କରି ରଖେ ପୁରୁଷାନୁକ୍ରମିକ ଭାବେ।

– କାହା ପରମ୍ପରା ?

ସତ୍ୟ ସିଂଙ୍କର ପ୍ରଶ୍ନ।

– ପ୍ରକୃତିର। ପ୍ରକୃତିର ସାମଗ୍ରିକ ବିଭବ ଯାହା ଅନ୍ୟ ସମସ୍ତ କ୍ଷେତ୍ରରେ ବିଜ୍ଞାନର

ପ୍ରଭାବରେ ଓ ଜ୍ଞାନର ରୂପରେ ପରିବର୍ତ୍ତିତ – କେବଳ ତୀର୍ଥ ସ୍ଥାନରେ ସେ ପ୍ରକୃତିର ପରମ୍ପରା ଜୀବନ୍ତ। ମଣିଷ କେତେ ବି ବିଜ୍ଞାନ ସହ ଆଗଉ – ସେ ପୁଣି ପଛକୁ ଫେରି ଚାହେଁ। ଯଦି ଏଇ ତୀର୍ଥ ସ୍ଥାନ ସବୁ ନଥାନ୍ତା ତା'ହେଲେ ବୋଧେ ସେ ପଛକୁ ଫେରି ଚାହିଁ ନିଜର ଅସ୍ତିତ୍ୱ ହିଁ ଖୋଜି ପାଆନ୍ତା ନାହିଁ।

– ଆପଣ କ'ଣ ଭାବନ୍ତି ?

ଅଧ୍ୟାପକ ଚକ୍ରବର୍ତ୍ତୀ ପାଣି ଦୁଇଗ୍ଲାସ ପିଇସାରି, ଶାନ୍ତିର ନିଶ୍ୱାସ ନେଲେ। ତାଙ୍କ ନିଜ ବିଷୟରେ ପ୍ରଶ୍ନ। ଏଥର ସେ ହାତ ଧୋଇ – ଗଳା ସଫାକରି ନେଲେ –

– Piligrim centres, particularly the Hindu centres, what ever may be the structure and form, represent an orthogenetic centre, exists as a system of religious nodes – which hold society, spreads new values, offer inspiration, exists as a security centre for those who lack or do not find complimentary social institutions in the modern society to cater certain needs and desire.

– What is that 'certain needs and desire'?

ଗୌର ପଟ୍ଟନାୟକଙ୍କ ପ୍ରଶ୍ନ –

– ଦେଖନ୍ତୁ ଦାଦା! ସାମାଜିକ ପ୍ରଥା ଅନୁସାରେ ବୟସ ହେଇଗଲେ ବୃଦ୍ଧମାନେ ଯୁବକଙ୍କୁ ଦାୟିତ୍ୱ ସମର୍ପଣ କରି ଦିଅନ୍ତି। ବାର୍ଦ୍ଧକ୍ୟରେ ବାନପ୍ରସ୍ଥ – ଆମ ସମାଜରେ ଏକ established social dictum. – ଅଧ୍ୟାପକଙ୍କ ଉତ୍ତର . . .

– ହଁ ହଁ – "ପୁତ୍ର ନିବେଶି ପତ୍ନୀ ପାଶେ
ଅଥବା ଚଳିବ ସନ୍ୟାସେ !"

ସତ୍ୟ ସିଂ ହସି ହସି ଉତ୍ତର ଦେଲେ।

– କିନ୍ତୁ! ବାର୍ଦ୍ଧକ୍ୟରେ ମନୁଷ୍ୟ ତାର ଦାୟିତ୍ୱ ଅନ୍ୟକୁ ସଂପିଦିଏ ବହୁ କଷ୍ଟରେ। ତାକୁ ଏହା କରିବାକୁ ଖୁବ୍ ବାଧେ। ଆପଣ ଜାଣିଥିବେ ପ୍ରୋଟେପ୍ଲାଜମ୍‌ର ଦିନରୁ ମଣିଷ ବଡ଼ ଅଧିକାର ଓ Power ପ୍ରିୟ। ସେ ଅନ୍ତିମ ମୁହୂର୍ତ୍ତ ସୁଦ୍ଧା କିଛି ଛାଡ଼ିବାକୁ ଚାହେଁନି। ତା' ସତ୍ତ୍ୱେଓ ବୟସ ଲାଗି ହେଉ, ବା ରୋଗ ଲାଗି ହେଉ ବା ସାମାଜିକ କାରଣରୁ ହେଉ –

ଯେତେବେଳେ ସେ ଏହି ଅଧିକାର ଓ Powerକୁ ଛାଡ଼େ – ସେତେବେଳେ ସେ ଯେଉଁ ସମୟ ପାଏ – ସେଥିରେ ସେ ନିଜ ଅତୀତର କର୍ମ ସବୁର ମୂଲ୍ୟାୟନ ଆରମ୍ଭ କରେ। ନିଜ ଭୁଲ ସବୁର ଭରଣା ପାଇଁ ସେ ପ୍ରକୃତି ଓ Super-natural ଉଭୟଙ୍କ ଉପରେ ଆସ୍ଥା ରଖେ। ଏହି Super-natural powerକୁ ମନୁଷ୍ୟ କାଳେ କାଳେ ଭଗବାନ ବୋଲି ମାନି ଆସିଛି – ଯାହା ସେ ବୁଝି ନ ପାରିଛି ତାକୁ ନମସ୍କାର କରିଛି – ତା' ନିକଟରେ ନିଜକୁ ଉତ୍ସର୍ଗ କରିଛି। ଏହି ଉତ୍ସର୍ଗହିଁ ତାକୁ ଦେଇଛି ଶାନ୍ତି, ସାନ୍ତ୍ୱନା ଏବଂ ଆନନ୍ଦ।

– ପୁରୀରେ କ'ଣ ଦେଖୁଛନ୍ତି ?

ମୋର ପ୍ରଶ୍ନ ।

– ପୁରୀ ତ ଅଦ୍ଭୁତ !

– ମାନେ ?

– ଏଠି ତ Cultural integration ହେଉଛି Viamedia great tradition to little tradition.

– ବୁଝି ପାରିଲିନି !

– ଯଦି ଆର୍ଯ୍ୟ ଓ ଦ୍ରାବିଡ଼ ସଭ୍ୟତାକୁ ଏଠିକାର ଶବର ସଭ୍ୟତା ଠାରୁ ବଡ଼ ବୋଲି ମାନି ନିଆଯାଏ ତା'ହେଲେ ଯାହା ସବୁବେଳେ ହୁଏ – ଅର୍ଥାତ୍ ଯିଏ ଜିତେ – ତା ସଂସ୍କୃତି, ଯିଏ ହାରେ – ତା' ସଂସ୍କୃତିକୁ ଚପେଇ ନିଏ – ଏଠି ହୋଇନି । ବରଂ ଏକ ବଡ଼ ସଂସ୍କୃତି – ଏକ ଛୋଟ ସଂସ୍କୃତିକୁ ମାନି ନେଇଛି । ଛୋଟ ସଂସ୍କୃତିର ଦେବତା ପାଇଁ ବଡ଼ ସଂସ୍କୃତିର ମହା ପଣ୍ଡିତମାନେ ସ୍ତୁତି ଗାନ କରିଛନ୍ତି । ଶାବରୀ ସଭ୍ୟତା predominant ହେଇ ରହିଯାଇଛି ଏଠି – ସାରା ଭାରତରେ ଯେଉଁ ତୀର୍ଥସ୍ଥାନ ସବୁ ଅଛି – ସେମାନଙ୍କ ଭିତରେ ପୁରୀ ଏକ ଆଶ୍ଚର୍ଯ୍ୟ !

– ଏହା କିପରି ସମ୍ଭବ ହେଲା ?

ହରି ମିଶ୍ରେ ପଚାରିଲେ ।

– ଏଥି ପାଇଁ ଆପଣଙ୍କ ଇତିହାସ ଉତ୍ତର ରଖିଛି । 'ରାଜା କାଳସ୍ୟ କାରଣମ୍' – ହୁଏତ ସଂସ୍କୃତ ପଣ୍ଡିତଙ୍କର ମତ । କିନ୍ତୁ ଯେଉଁ ରାଜ୍ୟରେ ରାଜା କାଳ ସୃଷ୍ଟି କରିବା ଅପେକ୍ଷା – ଲୋକଧର୍ମକୁ ରାଜଧର୍ମ କରେ ସେଠି ଏହାହିଁ ହେବାକୁ ବାଧ୍ୟ । ଓଡ଼ିଶାରେ ବହୁ ଅଣଓଡ଼ିଆ ରାଜା ହେଇଛନ୍ତି – କିନ୍ତୁ କେହି ଜଗନ୍ନାଥକୁ ଫୋପାଡ଼ି ପାରି ନାହାନ୍ତି ? ବରଂ ଜଗନ୍ନାଥ ଧର୍ମ ମାଧ୍ୟମରେ ରାଜ୍ୟଶାସନ କରାଯାଇଛି । ସେଥିପାଇଁ ଏଠିକାର ଯେଉଁ indigenus ପ୍ରଜ୍ଞା ତାକୁ ସଲାମ କରିବାକୁ ହେବ ।

– ହଁ – ମୁଁ ବୁଝି ପାରୁଛି । ଅଧ୍ୟାପକ ମିଶ୍ର ଉତ୍ତର ଦେଲେ । ଯେତେବେଳେ ପ୍ରତାପରୁଦ୍ର ଗୌଡ଼ୀୟ ବୈଷ୍ଣବ ଧର୍ମରେ ପାଗଳ ସେତେବେଳେ ବଳରାମ ଦାସ କ'ଣ କୁହନ୍ତି ପ୍ରତାପରୁଦ୍ରଙ୍କ ପାଇଁ ଜଗନ୍ନାଥଙ୍କୁ ଆକ୍ଷେପ କରି –

ତୋହ ଛଡ଼ା ମା କେ ହୁଅନ୍ତି ରାଜା
ତୋ ଭୃତ୍ୟକୁ ତା'ର ଏଡ଼େ ତରିଜା
ନାଥ ତୋ ଦୃଷ୍ଟି ଗୋଚରରେ ଯେ ମୋତେ
ରାଜା ନ କଲା ସେ ଯେ କେତେ କେତେ
ହରିହୋ – ହାବୁଡ଼ା ମାରି ଯେ ଦେଲା ଘଉଡ଼ି
ବଳରାମର ଯେ ଭାଙ୍ଗିଲା ଥୋଡ଼ି ।

– ଆରେ! ବଳରାମ ଦାସଙ୍କ ବିଷୟରେ ଟିକକ ଆଗରୁ ସେ ଅଧିକାରୀ ମଧ୍ୟ କହୁଥିଲେ। ତାଙ୍କ ବିଷୟରେ କିଛି କୁହନ୍ତୁ ଆଜ୍ଞା!

ମୁଁ ଅଧ୍ୟାପକ ମିଶ୍ରଙ୍କୁ ଅନୁରୋଧ କଲି। ଅଧ୍ୟାପକ ମିଶ୍ର ପାଟିରେ ଖଣ୍ଡେ ପାନ ଗୁଞ୍ଜି ଆରମ୍ଭ କଲେ।

– ବଳରାମ ଦାସ ଓଡ଼ିଶାର ସେଇ ପ୍ରସିଦ୍ଧ ସଖାହୀନ ପଞ୍ଚସଖାଙ୍କ ଭିତରେ ପ୍ରଥମ। ତାଙ୍କ ବାପା ସୋମନାଥ ମହାପାତ୍ର ପ୍ରତାପରୁଦ୍ରଙ୍କର ଜଣେ ମନ୍ତ୍ରୀ ଥିଲେ। ଦାଣ୍ଡି ରାମାୟଣ ରଚନା କରି ସାରିଲାବେଳକୁ ତାଙ୍କୁ ବତିଶି ବର୍ଷ ହୋଇଥିଲା। ସେ ବିବାହ କରିଥିଲେ ଓ ତାଙ୍କର କେତୋଟି ପୁତ୍ର କନ୍ୟା ମଧ୍ୟ ଥିଲେ। କଥିତ ଅଛି ତାଙ୍କର କାବ୍ୟ-ପ୍ରିୟା ଓ ପ୍ରେରଣା ଥିଲେ 'ଚାରୁ' ମାହାରୀ। ଚୈତନ୍ୟ ପୁରୀକୁ ଆସିବା ବେଳକୁ ତାଙ୍କର ଲକ୍ଷ୍ମୀପୁରାଣ ଘରେ ଘରେ ଝିଅ ବୋହୂ ପଢୁଥିଲେ ଏବଂ ଦାଣ୍ଡରେ ଲୋକେ ରାମାୟଣ ପଢୁଥିଲେ। ରାମାୟଣ ସେ ଅନୁବାଦ କରି ନଥିଲେ ବରଂ ରାମାୟଣର ଗଳ୍ପକୁ ଭିତ୍ତି କରି ଏକ ଓଡ଼ିଆ ରାମାୟଣ ରଚନା କରିଥିଲେ। ସଂସ୍କୃତ ରାମାୟଣରେ ଶବରୀ, ରାମଙ୍କୁ ଅଇଁଠା କୋଳି ଓ ଫଳ ଖାଇବାକୁ ଦେବାର ଦୃଷ୍ଟାନ୍ତ ନାହିଁ। କିନ୍ତୁ ବଳରାମ ଦାସ ଏହା ଲେଖିଛନ୍ତି। ନିଜେ ଚାଖି ନିଜର ପ୍ରିୟକୁ ଖୁଆଇବାର ଆତ୍ମୀୟତା – ତୁଳସୀ ଦାସଙ୍କ ଶବରୀର 'ନବଧା ଭକ୍ତି' ପର୍ଯ୍ୟାୟରେ ଆସି ନପାରେ। ଯାଇହେଉ ଏପରି ଏକ ପ୍ରଜ୍ଞାଶୀଳ କବି ଅନେକଥର ଚାରୁମାହାରୀ ଘରୁ ରାତିରେ ଆସିବାବେଳେ କଟୁଆଳ ହାତରେ ଧରା ବି ପଡ଼ିଥିଲେ।

– ଯୋଉ କବିତାର କେଇଧାଡ଼ି ଆବୃତ୍ତି କଲେ ତାକୁ ସେ କେଉଠି ଲେଖିଛନ୍ତି – ? ମୁଁ ପୁଣି ଥରେ ପ୍ରଶ୍ନ କଲି।

– ଶୁଣନ୍ତୁ! ସେଥର ରଥଯାତ୍ରା ବେଳର ଘଟଣା। ଦାସେ ଚାରୁମାହାରୀ ଘରେ ରାତି କଟଉଥାନ୍ତି। ନିଦ ହେଇ ଯାଇଛି। ହଠାତ୍ ଘଣ୍ଟ ମାଡ଼ରେ ତାଙ୍କ ନିଦ ଭାଜିଗଲା। ଆଖି ଖୋଲି ଦେଖନ୍ତି ସକାଳ ହେଇ ଯାଇଛି। ଭକ୍ତ ଓ ମତ୍ତ ବଳରାମ ଦଉଡ଼ିଗଲେ ରଥ ପାଖକୁ। ଦେହରେ ରାତିର ହଳଦୀ, ଅଗରୁ, ଚନ୍ଦନ, ଅଳତା ଓ କଳାର ଚିହ୍ନ ସବୁ ଜାଜ୍ଜୁଲ୍ୟମାନ। ତାଙ୍କୁ ରଥ ଉପରକୁ ଚଢ଼ିବାକୁ ସୁଯୋଗ ଦେଲେନି ପଣ୍ଡାମାନେ, ରାଜକର୍ମଚାରୀମାନେ। "ମନ ନିର୍ମଳ ଥିଲେ ଦେହଟା ବଡ଼ କଥା ନୁହେଁ" – ଏ ପାର୍ଥିବ ଜଗତର ଲୋକେ ମାନିବାକୁ ପ୍ରସ୍ତୁତ ନଥିଲେ। ତାଙ୍କୁ ଧକ୍‌କା ମାରି ରଥରୁ ଖସେଇ ଦିଆଗଲା। ତା'ପରେ କଥିତ ଅଛି ବଳରାମ ଦାସ ଅଭିମାନରେ ଏକ ବାଲିରଥ କରି ଜଗନ୍ନାଥଙ୍କୁ ସ୍ଥାପନ କରି ଗାଇ ଉଠିଲେ ଅଭିମାନର ଶାଣିତ କବିତା। ଯାହାକୁ 'ଭାବ ସମୁଦ୍ର' ବୋଲି କୁହାଯାଏ। କେତେକ ପଣ୍ଡିତଙ୍କ ମତରେ – ବଳରାମ ଦାସ ବାଲିରଥ କରି ଶରଧା ବାଲିରେ ବସିବା କଥା ହୁଏତ ପରଯୁଗର myth – କିନ୍ତୁ ସେ ସେଇଠି ଭାବସମୁଦ୍ର ଗାଇଥିଲେ ଏବଂ ତାଙ୍କ ଶିଷ୍ୟମାନେ ସେ ଧାଡ଼ି ସବୁର ଘୋଷା ଧରିଥିଲେ। ସେ ଯୁଗର ଏତେ ପ୍ରସିଦ୍ଧ କବିର ରଚନା ଶୁଣିବାରେ ଯାତ୍ରୀମାନେ ରଥ ଦଉଡ଼ା ଛାଡ଼ି ଏପରି ଭିଡ଼ କଲେ ଯେ – ଶେଷକୁ ରଥ ଚାଲିଲା ନାହିଁ।

– ଶୁଣାନ୍ତୁତ ପଦେ ଦି'ପଦ ଆଉ . . . ମୁଁ ଅନୁନୟ କଲି . . .

ଅଧ୍ୟାପକ ମିଶ୍ର କହିଲେ। ଶୁଣିକରି ଆଶ୍ଚର୍ଯ୍ୟ ହେବେ – ସେ ଯୁଗରେ ଅର୍ଥାତ୍ ଷୋଡ଼ଷ ଶତାବ୍ଦୀରେ ସାରା ପୃଥିବୀରେ ବୋଧେ କେହି କବି – ତା' ରାଜା ବିରୁଦ୍ଧରେ ଏପରି ସଂଗ୍ରାମ ଘୋଷଣା କରିନି – କବିତା ମାଧ୍ୟମରେ। ଏପରି rebel କବିଙ୍କୁ କିନ୍ତୁ ଏ ଜାତି ଆଜିଯାଏଁ ସମ୍ମାନ ଦେଇ ଶିଖିନି . . . ବରଂ ଚୈତନ୍ୟ, ଯିଏ ନାରୀ ମୁଖ ଦର୍ଶନ କରିବାର ବିରୋଧି ଥିଲେ – ବଳରାମଙ୍କ ପରି ଜଣେ ପ୍ରେମିକକୁ ବା ସାଧାରଣ ସାଂସାରିକ ମୂଲ୍ୟବୋଧ ଅନୁସାରେ ଏକ ଚରିତ୍ରହୀନ କବିକୁ ନେଇ ରାୟ ରାମାନନ୍ଦଙ୍କ ସହ ଭେଟିବାକୁ ଦକ୍ଷିଣକୁ ଯାଇଥିଲେ ଓ ସେ ଚୈତନ୍ୟଙ୍କର ଶିଷ୍ୟ ଥିଲେ ଇତ୍ୟାଦି କହି – ତାଙ୍କ ପ୍ରତିଭାକୁ ଆମେ ଅସମ୍ମାନ କରିଛୁ।

– ଆମେ ପରା ଓଡ଼ିଆ – ଦେଢ଼ ଗୋଡ଼ିଆ।

ସତ୍ୟ ସିଂଙ୍କ ତାଚ୍ଛଲ୍ୟ।

– ଚୈତନ୍ୟ ଥିଲେ ରାଜପୃଷ୍ଠପୋଷକତା ପ୍ରାପ୍ତ ଏକ 'ବାବା' – କିନ୍ତୁ ରାଜଦଣ୍ଡ ବିରୁଦ୍ଧରେ ସ୍ୱର ଉତ୍ତୋଳନକାରୀ କବି ବଳରାମ କ'ଣ କୁହନ୍ତି ଜାଣନ୍ତି ?

"କି ଦୋଷେ ନୃପତି ଗଞ୍ଜିଲା ମୋତେ
ମୁଁ ଯେ ଅପ୍ରାଧ କରି ନାହିଁ ତୋତେ
ନାଥ ତୁ ଅପ୍ରାଧ ଥିଲାକୁ କଲୁ
ରାଜା ହାତରେ ନେଇ ଦଣ୍ଡ ଦେଲୁ
ହରିହୋ – ଆଜି ଜାଣିବା ତୋର ବଡ଼ ପଣ
ପଡ଼ିଲୁ ବଳିଆ ଦାସ ହାତେଣ।
× × ×
କେତେ ଲୋକ ଥିଲେ ରଥରେ ବସି
ମୋତେ ଘଉଡ଼ି ଦେଲା ରାଜା ଆସି
ନାଥ ତୁ ତାହା କେମନ୍ତେ ସହିଲୁ
କେମନ୍ତେ ସ୍ତମ୍ଭୀଭୂତରେ ରହିଲୁ
ହରିହୋ – ସମସ୍ତ ଲୋକ କଲେ ଉପହାସ
ଦାସ ବଳିଆ ତୋ ନୁହଁଇ ଦାସ।
× × ×
ତୋହି ଗଲେ ମୁଁ ନ ଯିବି ସଙ୍ଗତେ
ନୃପତି ଅସୁଖ ବୁଝିବ ମୋତେ
ନାଥ ତୁ ରାଜାକୁ ଛାଡୁ କିମ୍ପାଇ
ତେତେ ଯେ ଅନେକ ଭୋଗ ଦିଅଇ . . .

– ବାଃ . . . ବାଃ . . .

ଅଧ୍ୟାପକ ଚକ୍ରବର୍ତ୍ତୀ – ପ୍ରଶଂସାରେ ଶତମୁଖ ହେଇଉଠିଲେ।

– ଆପଣ ବୁଝି ପାରିଛନ୍ତି ? ସତ୍ୟ ସିଂଙ୍କର ପ୍ରଶ୍ନ।

– ହଁ! ଆଗରୁ କହିଛି – ପିଲାବେଳେ ପୁରୀରେ ପାଠ ପଢୁଥିଲି। ଦେଖିଲେ କି Powerful poet ? ବର୍ତ୍ତମାନ ଆପଣଙ୍କର ଓଡ଼ିଆ କବିମାନେ ଏପରି challange ଦେଇ ପାରିବେ ?

– ହୁଁ! ସବୁଯାକ କବି ବର୍ତ୍ତମାନ ସରକାରୀ ଚାକିରୀଆ। ସରକାରୀ ଚାକିରୀଆ କେବେ ଭଲ ଲେଖକ ହେଇପାରେ ? ସେ ତ କପଟ କରିବ ନିଜ ଚିନ୍ତା ଓ ଚେତନା ସହ। ନିଜ ପେଟକୁ ବଡ଼ କରି ନେଇଥିବା ଲୋକ କେବେ ହେଲେ – କବି ହେଇ ପାରେନା। ସରକାରୀ ଚାକିରୀର ଆଇନ୍ କାନୁନ୍ ଭିତରେ ବନ୍ଧା ହେଇ – ନିଜ ମାନସିକ ଯନ୍ତ୍ରଣାକୁ ରୂପ ଦେବାକୁ ଗଲାବେଳେ ତା' ନିଜ ଜୀବନର କପଟାଚାର ଭିତରେ – ତା' ରଚନା ବି ଅସ୍ପଷ୍ଟ ଓ ଅବୋଧ ହେଇ ଯିବାକୁ ବାଧ୍ୟ। କିନ୍ତୁ, ଯେହେତୁ ମନର କଣ୍ଡୁ ମାରଣ ପାଇଁ ଲେଖୁଛନ୍ତି – ଏବଂ ହାତରେ ବଡ଼ ଚାକିରୀ ଅଛି – ସାମାଜିକ ପ୍ରତିପତ୍ତି ଅଛି – ତେଣୁ ତାକୁ ଅପରଙ୍କ ଉପରେ ଜବରଦସ୍ତ ଚପେଇ ଦଉଛନ୍ତି। ଲୋକେ ବୁଝୁ ନାହାନ୍ତି ବୋଲି ନୁହେଁ – କିନ୍ତୁ ପଞ୍ଚସ୍ତରୀ ଭାଗ ଅଶିକ୍ଷିତ ଜନତା ପାଇଁ ଏ କବିତାର ମୂଲ୍ୟ କିଛି ନାହିଁ – ଏମାନଙ୍କୁ କେହି ମନେ ବି ରଖୁ ନାହାନ୍ତି। ସମାଜର, ସଂସ୍କୃତିର ଜଡ଼କୁ ନଧରି – ଏଠିକା କଥା ନକହି ଯେଉଁ କପଟାଚାର ସେମାନେ କରୁଛନ୍ତି – ତାକୁ ଘୋଡ଼ଉଛନ୍ତି ବିଦେଶୀ ପଢ଼ା ବହି ଜ୍ଞାନର ଖୋଳପାରେ। ତାଙ୍କୁ ତେଣୁ recognition ଦରକାର ପୁରସ୍କାର ମାଧ୍ୟମରେ – ଅଳ୍ପ କେଇଜଣଙ୍କର ପିଠି ଥାପୁଡ଼ାରେ। କିନ୍ତୁ ଯିଏ ତା ମାଟି, ପାଣି ଓ ପବନ ସହ ଜଡ଼ିତ – ଯିଏ ଲୋକଙ୍କର ଦୁଃଖ ଯନ୍ତ୍ରଣାରେ ଜଣେ ଭାଗୀଦାର – ସେ ତ ଯୁଗର ସ୍ୱର ଉତ୍ତୋଳନ କରିବ – ହଜାର ହଜାର ସାଧାରଣ ଲୋକଙ୍କ ମୁହଁରେ ଗୁଞ୍ଜରିତ ହେବ – ସେ ରାଜଦଣ୍ଡକୁ ଡରିବ କାହିଁକି ? ପେଟ ପାଟଣାକୁ ବା ଜୀବିକାକୁ ବଡ଼ କରି ଜୀବନକୁ ଧ୍ୱଂସ କରୁଥିବା ଆମ ଆଜିକାର କବିମାନେ ଏ ସାହସ କିପରି କରିବେ – ସରକାରୀ code ଓ conduct ଭିତରେ ? ବାକି ସମାଜରେ ବି ସ୍ୱାଧୀନ ରହି ସାହିତ୍ୟ କରିବା ପାଇଁ ପଥ କାହିଁ – ଅବସ୍ଥା କାହିଁ ? ଏପରି କଷ୍ଟକର ଜୀବନ ଗ୍ରହଣ କରିବା ପାଇଁ ଯେଉଁ ସତ୍ ସାହସ ଆବଶ୍ୟକ ସେପରି ସାହସୀ ଚରିତ୍ର ବି କାହାନ୍ତି ? ଆଜିକାର କବିତା ତେଣୁ କେବଳ କବିର – ତା ଆତ୍ମ ବିଜ୍ଞାପନର –

ଆଡ଼ଭୋକେଟ୍ ସତ୍ୟ ସିଂଙ୍କର ଯୁକ୍ତିରେ ଅଧ୍ୟାପକ ଦ୍ୱୟ, ମୁଁ ଓ ଅଧ୍ୟାପକ ଚକ୍ରବର୍ତ୍ତୀ ଏକମତ ହେଲୁ। ତା'ପରେ ଅଧ୍ୟାପକ ମିଶ୍ର ପୁଣି ଆରମ୍ଭ କଲେ –

– ହଁ! ମୁଁ କହୁଥିଲି – ରାଜା ଯାହା ହେଉନା କାହିଁକି – ଲୋକ ଚରିତ୍ରର ବଳିଷ୍ଠ ପ୍ରତିନିଧିତ୍ୱ ହେଇ ପାରିଲେ – ରାଜା ମୁଣ୍ଡ ନୋଇଁବାକୁ ବାଧ୍ୟ ହେଇଯାଏ। ଶତ ଶତ ମୁଖର

ଜନତା ଯେତେବେଳେ ଜଗନ୍ନାଥଙ୍କୁ ଏତେ ବଡ଼ ବୋଲି ମାନି ନେଲା – ସେତେବେଳେ ରାଜା ଲୋକଧର୍ମ ଗ୍ରହଣ କରିବାକୁ ବାଧ୍ୟ ହେଲା। ରାଜାମାନେ ଓଡ଼ିଶାରେ ଜଗନ୍ନାଥଙ୍କୁ ବୈଦିକ ଦେବତାରେ ରୂପାନ୍ତରିତ କରି ପାରିଲେ ନାହିଁ। ବଳରାମ ଦାସ ସେଇ ଅବସ୍ଥାରେ ଜଗନ୍ନାଥଙ୍କ ମାଧ୍ୟମରେ ରାଜାଙ୍କୁ କିପରି ବଚନିକା ଶୁଣେଇଲେ ଜାଣନ୍ତି ?

"ମୁହିଁ ଯେ କଲି ତୋତେ ବଡ଼ ପଣ
ତୁ କେଉଁ ଲୋକ ମୋତେ କହ ପୁଣ
ନାଥ ତୁ ମୋହ ଘେନି ସିନା ଏଡ଼େ
ମୁଁ ଯେ ଧରି ଅଛଇଁ ତୋତେ ଗାଢ଼େ
ହରିହୋ – ମୋହ ନଥିଲେ ତୁହି ଥିବୁ କାହିଁ
ବଳରାମ ଦାସ ଡରଇ ନାହିଁ !"

– ମିଶ୍ର ବାବୁ ! ମୁଁ ଟିକେ ଲେଖିନେବି ଏଇ stanzaଟା – ମତେ ଆଉ ଥରେ ଧୀରେ ଧୀରେ ଡାକନ୍ତୁ।

ଆମେମାନେ ହାତ ଧୋଇ ସାରି ସିଗାରେଟ୍‌ରେ ନିଆଁ ଧରେଇଥିଲୁ। ଅଧ୍ୟାପକ ଚକ୍ରବର୍ତ୍ତୀ ପଦଟି ଟିପି ନଉଥିଲେ ବଙ୍ଗଳା ଅକ୍ଷରରେ – ବଳରାମ ଦାସଙ୍କ କବିତା।

– ସମାଜର ଏଇ ଅନ୍ତର୍ନିହିତ ଗୁଣ ଲାଗି ଅନ୍ୟ ଏକ ସଂସ୍କୃତି କୌଣସି ଏକ ନିର୍ଦ୍ଦିଷ୍ଟ ସଂସ୍କୃତିକୁ ଚପେଇ ଦେଇ ପାରେନି। ଓଡ଼ିଆ ଜାତି ଓ ଜଗନ୍ନାଥ ଏପରି ଭାବେ ଅଙ୍ଗାଙ୍ଗୀ ସେ ଜଗନ୍ନାଥକୁ ଫୋପାଡ଼ି ଦେଇ ତା ସ୍ଥାନରେ ଅନ୍ୟ କାହାକୁ ବସେଇ ଦିଆଯାଇ ନପାରେ। ପ୍ରତି ଯୁଗରେ ଏଇପରି ଦଳେ ଦଳେ refellion minority ସଂସ୍କୃତିକୁ ବଞ୍ଚେଇ ରଖେ। ନୋହିଲେ ତ majority passive ଏବଂ ଶସ୍ତା ରାସ୍ତାରେ ସମସ୍ତେ ଯିବାକୁ ବ୍ୟଗ୍ର।

ଅଧ୍ୟାପକ ଚକ୍ରବର୍ତ୍ତୀଙ୍କର ମନ୍ତବ୍ୟରେ ସତ୍ୟ ସିଂ ହଠାତ୍ ଖୁବ୍ ଖୁସି ହେଇଗଲା ପରି ଲାଗିଲା।

– ଦେଖିଲୁ ମଣି ! ଆଉ ନହେଲେ ତମେ "ଯୋଉ ଅତି ପଣ୍ଡିତରେ ବାଇ"ମାନଙ୍କ କଥା ଏଇନା କହୁଥିଲୁ – ତାଙ୍କ ମୂଲ୍ୟ ବୁଝିଲୁ ତ।

ଏକ ସଙ୍ଗରେ ସମସ୍ତେ ଉଠିଲୁ। ଖରା ଟିକେ ଝାଉଁଳି ଆସୁଛି। ଆଗରେ ଜଗନ୍ନାଥ ବଲ୍ଲଭ ମଠ ଏବଂ ପଛରେ ବଡ଼ଦ୍ୱାର ଦେଇ ନରେନ୍ଦ୍ର କୋଣକୁ ରାସ୍ତା। କୁଆଡ଼େ ଆଗେ ବାହାରିବୁ ସେଇକଥା ଭାବି ମୁଁ ସତ୍ୟ ସିଂଙ୍କୁ ପଚାରିଲି –

– ଆଜ୍ଞା ! ନରେନ୍ଦ୍ର ପୁଷ୍କରଣୀ ଆଡ଼େ ଟିକେ ଯିବା ନାଁ ଜଗନ୍ନାଥ ବଲ୍ଲଭ ମଠ ଆଡ଼େ ଯିବା।

– ଯୁଆଡ଼େ ଗଲେ ବି ଏକା କଥା। ନରେନ୍ଦ୍ର ଗଲେ ସେଇଠୁ ଜଗନ୍ନାଥ ବଲ୍ଲଭର ବଗିଚା ଦେଇ ଏକ ରାସ୍ତା ମଠକୁ ଅଛି। ନହେଲେ ଆଗ ମଠକୁ ଗଲେ ମଠ ଦେଇ ନରେନ୍ଦ୍ର ଯାଇ ହେବ। ପୁରୀରେ ବଡ଼ ପୋଖରୀ ଆଜ୍ଞା ତିନିଟା। ନରେନ୍ଦ୍ର, ଇନ୍ଦ୍ରଦ୍ୟୁମ୍ନ ଓ ମାର୍କଣ୍ଡ।

ତା'ଛଡ଼ା ଶ୍ୱେତଗଙ୍ଗା ମଧ୍ୟ ଅଛି।

– ତା'ହେଲେ ଚାଲନ୍ତୁ ନରେନ୍ଦ୍ର ହେଇ ଜଗନ୍ନାଥ ବଲ୍ଲଭ ମଠରେ ପଶିବା।

ଅଧ୍ୟାପକ ଚକ୍ରବର୍ତ୍ତୀ ପୁରୀରେ ତାଙ୍କ ଠିକଣାଟି ମୋ ହାତରେ ବଢ଼େଇ ଦେଇ ଆମଠୁ ବିଦାୟ ନେଲେ। ହରି ବାବୁ, ଗୌର ପଟ୍ଟନାୟକ, ସତ୍ୟ ସିଂ ଓ ମୁଁ ବଡ଼ଦ୍ୱାର ଛକଠୁ ଗଳିରେ ପଶିଲୁ। ଦୁଇକରେ ଲମ୍ବା ଚାଳଘରର ଧାଡ଼ି। ଗୁଡ଼ିଏ ଛୋଟ ଛୋଟ ହୋଟେଲ ରାସ୍ତା ସାରା।

– ଚନ୍ଦନ ଯାତ୍ରାବେଳେ ଏ ରାସ୍ତା ଗହଳିରେ ଫାଟି ପଡ଼େ। ବାକି ଦିନଯାକ ଏମିତି।

ଖରା ପ୍ରାୟ ନାହିଁ। ଆକାଶରେ ପୁଷ ମାସିଆ ବୁଦି ବୁଦିକିଆ ମେଘ ତଳେ ସୂର୍ଯ୍ୟ ଛପି ଯାଇଛି। ପୁଷୁ-କାହାଁଳ। ପବନ ପିଟୁଛି ଜୋରରେ।

– ବୁଝିଲୁ ମଣି ! ଯେ ହେଲା କୋକଲି ପବନ।

– ମାନେ। ଗୌର ପଟ୍ଟନାୟକ ପଚାରିଲେ।

– କୋକଲି ମାଛ – ଇଂଲିଶରେ ଯାହାକୁ କହନ୍ତି 'Saridon' – ଏଇମିତି ପବନ ହେଲେ ବହୁତ ପଡ଼ନ୍ତି, କିଲୋ ଆଠଅଣାରେ ବିକ୍ରି ହୁଏ। ମାଛ ଖାଲି ଭାଜି କରି ତ ଖାଇଯିବ। ଦୂରରୁ ଏକ ବିରାଟ ଜଳାଶୟ ଦୃଷ୍ଟିଗୋଚର ହେଉଛି। ଚାରିପଟେ ପଥର ବନ୍ଧା ପାଚେରୀ ଓ ପାହାଚ। ମଝିରେ ଗୋଟେ ମନ୍ଦିର। ସତ୍ୟ ବାବୁ ଚିହ୍ନଉଥିଲେ – ଏଇଟା ଚନ୍ଦନ ପୋଖରୀ। ମଝିରେ ସେ ଛୋଟ ମନ୍ଦିର ଦୀପଦାଣ୍ଡି ଏବଂ ଏଇ ଯୋଉ ବଡ଼ ମନ୍ଦିର – ଯେଉଁଠାଯାଏଁ ଚକଡ଼ା ଅଛି ତାକୁ କହନ୍ତି 'ଚନ୍ଦନ ଘର'। ରୂପ ପରେ ଦିଅଁ ସେଇଠି ବେଶ ହୁଅନ୍ତି ମାଣ୍ଡୁଅ ଭୋଗ ଖାଆନ୍ତି – ପୁଣି ରାତି ରୂପ ପରେ ଦେଉଳକୁ ଫେରନ୍ତି। ପଛପଟରେ 'ଜଟିଆ ବାବା'ଙ୍କ ମଠ।

ପାଞ୍ଚ

# ଷଡ଼ମୁଖା ଗାଈ ଦୁଧ ପହ୍ନାଇଛି...
# ସଂସାର ବାଂଝ ଚାଲିଛି

ପୁଷ ମାସର କାଲୁଆ ପବନରେ କଟିଆବାବା ମଠର ନଡ଼ିଆ ଗଛ ସବୁ ଝାଙ୍କି ହେଇ ଯାଉଥିଲା। ନଡ଼ିଆ ଗଛରେ ସତେବା ପବନର ଢେଉ ମାଡ଼ ହୋଇ ପୁଣି ନରେନ୍ଦ୍ରର ନୀଳ ଜଳରାଶିକୁ ଆନ୍ଦୋଳିତ କରୁଥିଲା। ଚକଡ଼ା ଉପରେ ଦଳେ ବାବାଜୀ ଗାଧୁଆ ପାଧୁଆ – ଭୋଜନ ଭାଜନ ସାରି, ବୋଧେ ଖଞ୍ଜଣିରେ ତାଳ ଦେଉଛନ୍ତି ଅଚ୍ୟୁତାନନ୍ଦଙ୍କର ଏକ ଭଜନ ସହ –

ସୁଜନେ ହୋ! ବାଲିରେଣୁ ମହାବନ୍ଧ
ଦୋମୁହାଁ ସର୍ପକୁ ଭୟ ନ କରିଣ
ବେଙ୍ଗ ଚଢ଼େ ଗଜକନ୍ଧ... ସୁଜନେ ହୋ...
ଅଣ୍ଡିରା ହଂସ ଯେ ଡିମ୍ବେକ ପାଡ଼ିଛି
ତା' ମଧ୍ୟେ ଯୋଡ଼ିଏ ଛୁଆ
ଆଡ଼କରେ ଜଳ ଆଡ଼କେ ଅନାଳ
ଦେଖି ହେଲି ଅଚାବୁଆ... ସୁଜନେ ହୋ
ତନ୍ତୀ ବାପୁଡ଼ାକୁ ତନ୍ତ ଗିଳିଗଲାଣି
ଚାଷୀକୁ ଗିଳେ ଲଙ୍ଗଳ
ସପନ ସମୁଦ୍ର କୂର୍ମ ଗିଳିଗଲା
ବୃକ୍ଷକୁ ଗିଳିଲା ଫଳ... ସୁଜନେ ହୋ

– କିରେ ମଣି! କେମିତି ଆବ୍‌ସର୍ଡ କବିତା ଶୁଣୁଛୁ?

– ଆବ୍‌ସର୍ଡ ନୁହେଁରେ, ଯୌଗିକ କବିତା। ଅର୍ଥ ଯଦି ଠିକ୍ କରି ବୁଝିଯାଉ ତା'ହେଲେ ଇ ନିଜେ ଜଣେ ଯୋଗୀ ହେଇଯିବୁ।

– ଓଡ଼ିଆ ଅଧ୍ୟାପକ ତ! ବୁଝେଉନୁ –

– ଅନୁଭବ କରିହେବ ଏହାକୁ ନିଜ ସାଧନା ମାଧ୍ୟମରେ ବୁଝେଇବାରେ କ'ଣ

ଅଛି ? ସତ୍ୟ ସିଂ ଓ ହରିମିଶ୍ରଙ୍କ ଯୁକ୍ତି ତର୍କ ଭିତରେ ଡୁବିବା ପୂର୍ବରୁ ଆଉ ଏକ ଯୁକ୍ତି ତର୍କ ଆସି କାନରେ ବାଜିଲା। ପଛକୁ ବୁଲି ଚାହିଁଲି। ରିକ୍‌ସା ଉପରେ ଦୁଇଜଣ ବୟସ୍କ ଭଦ୍ରବ୍ୟକ୍ତି ବସିଛନ୍ତି। ପଛପଟର ପାଚେରୀ ଆରପଟେ ଦିଶୁଥିବା ଏକ ମଣ୍ଡପକୁ ଲକ୍ଷ୍ୟ କରି ଚଷମା ପିନ୍ଧା ମୋଟାସୋଟା ଉଚ୍ଚ ଭଦ୍ରବ୍ୟକ୍ତି, ପତଳା ଦିଶୁଥିବା ଓ Air Forceର badge ନଥିବା ଏକ ଟୋପି ପିନ୍ଧା ଲୋକକୁ ଖୁବ୍ ଉଚ୍ଚ ସ୍ୱରରେ କହୁଛନ୍ତି –

– ଜାଣ ଏଇ ମଣ୍ଡପର ଇତିହାସ ?

– ଆପଣ କୁହନ୍ତୁ।

– ଯେ ହେଲା ଜଗନ୍ନାଥ ବଲ୍ଲଭର ସେଇ ମଣ୍ଡପ ଯେଉଁଠି ଓଡ଼ିଆମାନଙ୍କୁ ୰ ମଧୁସୂଦନ ଦାସ ୧୯୦୮ ମସିହାରେ ଦୀକ୍ଷାମନ୍ତ୍ର ଦେଇଥିଲେ। ଆଧୁନିକ ଓଡ଼ିଶାର ଇତିହାସ ଏଇଠୁ ଆରମ୍ଭ କହି ପାରନ୍ତି। ଯେ ସେହି ଜଗନ୍ନାଥ ବଲ୍ଲଭ ମଠର ସଭାମଞ୍ଚ।

– ଆରେ ହରିବାବୁ !

ପାତଳ ଓ କ୍ଷୁଦ୍ରକାୟ ଭଦ୍ରବ୍ୟକ୍ତି କଥାର ମୋଡ଼ ବୁଲେଇବାକୁ ଯାଇ ସତେ ଯେପରି ଆମ ଆଡ଼େ ନଜର ପକେଇଲେ।

– ସେ କହିଲେ ଶ୍ରୀମନ୍ତ ମିଶ୍ର। ଅବସର ପ୍ରାପ୍ତ ଜଣେ ସରକାରୀ କର୍ମଚାରୀ – ତାଙ୍କ ପୁଅ ମୋ ସାଙ୍ଗ। ସବୁ ପୁଅମାନେ ପ୍ରତିଷ୍ଠିତ। ବୁଢ଼ା ଗୋପବନ୍ଧୁ ମିଶନ କରିଛନ୍ତି। ଯାହାର ପ୍ରେସିଡେଣ୍ଟ, ପ୍ରଚାରକ ଠାରୁ ଆରମ୍ଭ କରି ପିଅନ ପର୍ଯ୍ୟନ୍ତ ସମସ୍ତ କାର୍ଯ୍ୟ ସେ କରନ୍ତି। ଛୋଟ ଛୋଟ ଚଟି ବହି ପ୍ରକାଶିତ କରନ୍ତି – କବିତା ବହି। ତାକୁ ପୁଣି ନିଜେ ବିକ୍ରି କରନ୍ତି ବା ବାଣ୍ଟି ଦିଅନ୍ତି। ଅନ୍ୟ ଭଦ୍ରବ୍ୟକ୍ତି ହେଲେ ଶ୍ରୀ ରବୀନ୍ଦ୍ର କୁମାର ଦାସ। ଓଡ଼ିଶାର ପ୍ରଥମ D.S.P. ଗୁରୁପ୍ରସାଦ ଦାସଙ୍କର ପୁତ୍ର। ଅଠଷଠୀ ବର୍ଷ ବୟସରେ ବି ଅବିବାହିତ। ବହୁ ପଢ଼ାଶୁଣା କରିଛନ୍ତି। ସେ ଡୁଡୁମା ଆକ୍‌ସନ କମିଟିର ଜଏଣ୍ଟ ସେକ୍ରେଟାରୀ ଥିଲେ। ଓଡ଼ିଶାରେ ପାରଳା ମହାରାଜା ଯେତେବେଳେ ମୁଖ୍ୟମନ୍ତ୍ରୀ ଥିଲେ, ସେତେବେଳେ ଓଡ଼ିଶାରେ କିପରି ଡୁଡୁମା ରହିବ ସେଥିପାଇଁ ତାଙ୍କ ପ୍ରଚେଷ୍ଟା ଓ କର୍ମ ପ୍ରବଣତା ଲାଗି ଲୋକେ ତାଙ୍କୁ ଏଇ ନାମରେ ହିଁ ଡାକୁଥିଲେ। ଓଡ଼ିଶା ଡୋମିସାଇଲ୍ କମିଟି ୧୯୪୨-୪୩ର ଜଣେ ସଭ୍ୟ ଥିଲେ ୩୪ ବର୍ଷ ବୟସରେ – ପଣ୍ଡିତ ଗୋଦାବରୀଶ ମିଶ୍ର, ଶ୍ରୀ ଜଗବନ୍ଧୁ ସିଂ ଓ ବ୍ରଜସୁନ୍ଦର ଦାସ ଇତ୍ୟାଦିଙ୍କ ସହ। ଓଡ଼ିଶାର ସେ ସମୟର ରାଜନୈତିକ ଓ ସାମାଜିକ ଜୀବନର ସେ ଜଣେ ଜୀବନ୍ତ ବତୀଖୁଣ୍ଟ। ଶ୍ରୀମନ୍ତ ମିଶ୍ରଙ୍କର ଯେପରି ଗୋପବନ୍ଧୁ ପ୍ରୀତି – ତାଙ୍କର ସେଇପରି ମଧୁସୂଦନ। କ'ଣ ଗୋଟେ କିଛି ବିତଣ୍ଡା ଲାଗିଛି ନିଶ୍ଚୟ –

ଆମେ ସମସ୍ତେ ରିକ୍‌ସା ଆଡ଼େ ବଢୁଥିଲା ଚକଡ଼ା ଉପରୁ ଏବଂ ହରିମିଶ୍ରେ ସେ ଉଭୟ ଭଦ୍ରବ୍ୟକ୍ତିଙ୍କ ବିଷୟରେ ଆମକୁ ସମ୍ୟକ ଧାରଣା ଦେଉଥିଲେ। ରିକ୍‌ସାର ଅତି ନିକଟକୁ ଯାଇ ଦେଖିଲି – ଶ୍ରୀମନ୍ତ ମିଶ୍ରଙ୍କ ଛାତି ପକେଟ୍‌ରେ ଥିବା ଚଷମା ଖୋଳ

ଉପରେ ଲେଖା ହୋଇଛି 'ଆସନ୍ତା କାଲି ସାବଧାନ'। ତାଙ୍କ ହାତରେ ଖଣ୍ଡେ 'ଆସନ୍ତାକାଲି' ପତ୍ରିକା ଓ ଖଣ୍ଡେ 'ମାନସ'। ରବିବାବୁଙ୍କ ହାତରେ ଦୁଇଖଣ୍ଡ ବହି। ଆମକୁ ଦେଖି ରବିବାବୁ ଚୁପ୍ ହୋଇ ପ୍ରଥମେ ନିରିକ୍ଷଣ କଲେ। ଆମେ ଉଭୟଙ୍କୁ ନମସ୍କାର କଲୁ। ଶ୍ରୀମନ୍ତ ମିଶ୍ର କଥାଟା ଆରମ୍ଭ କଲେ . . .

– ଆଚ୍ଛା ବାବୁମାନେ! ତମେ ହେଲ ଆସନ୍ତା ଯୁଗର ଶିଳ୍ପୀ, କବି, କଳାକାର। ତମେମାନେ ଏବକାର ପିଲେ – ତେଣୁ ଅତୀତ ବିଷୟରେ ବେଶି କିଛି ଜାଣନି। କିନ୍ତୁ ଆମେ ବୟସ ଲାଗି କିଛି କିଛି ଜାଣୁ। ଆଜି ଗୋପବନ୍ଧୁଙ୍କର ଶତବାର୍ଷିକୀ ପାଳନ ହେଉଥିବା ବେଳେ ତାଙ୍କ ନାଁରେ ଯେଉଁ ଅପପ୍ରଚାର ଚାଲିଛି – ସେ ବିଷୟରେ ତମେମାନେ କିଛି ଖବର ରଖିଥିବ ନିଶ୍ଚିୟ . . .

– କ'ଣ 'ଗୋପବନ୍ଧୁ ଜ୍ୟୋତି' ବିଷୟରେ କହୁଛନ୍ତି ?

ସତ୍ୟ ସିଂଙ୍କ ପ୍ରଶ୍ନ।

– ଆହେ ସେ ରାଜନୀତିରୁ ଆମକୁ କ'ଣ ମିଳିବ ? ପଲେ ବତୀ ପେଲିଆ ସବୁ ଯୁଗରେ ଶାସନକୁ ଘେରି ଯାଆନ୍ତି – ପୁଣି ସେଇମାନେ ଶାସନକୁ ଗିଳି ଦିଅନ୍ତି। ମୁଁ କହୁଛି 'ଆସନ୍ତାକାଲି'ରେ 'କୁଳବୃଦ୍ଧ'ଙ୍କ ଉପରେ ଲେଖିବାକୁ ଯାଇ ସୁରେନ୍ଦ୍ର ମହାନ୍ତିଙ୍କ ପରି ଲେଖକ ଯେଉଁ ଭାଣ୍ଡାମୀ କରିଛନ୍ତି – ସେ ବିଷୟରେ। 'ମାନସ' ପଢ଼। ଡଃ କୃଷ୍ଣପ୍ରସାଦ ମିଶ୍ର ତାର ଉତ୍ତର ଦେଇଛନ୍ତି – 'ଆକଶକୁ ଛେପ'ରେ। ଗୋପବନ୍ଧୁଙ୍କ ଚରିତ୍ର ପତ୍ର ପୁଣି ଆକ୍ଷେପ ?

ଆକ୍ଷେପ କ'ଣ ? ସତ୍ୟ ଚୀରକାଳ ସତ୍ୟ। ସୁରେନ୍ଦ୍ର ମହାନ୍ତି ତ ତାଙ୍କ ମନରୁ ଲେଖି ନାହାନ୍ତି – ରବିବାବୁଙ୍କର ବଜ୍ର ଗମ୍ଭୀର ସ୍ୱର ମତେ ବେଶ୍ ଆକର୍ଷଣୀୟ ମନେ ହେଲା। ମୁଁ 'ଆସନ୍ତାକାଲି'ରେ 'କୁଳବୃଦ୍ଧ' ପଢ଼ିଥିଲି। 'ଆକାଶକୁ ଛେପ' ବି ପଢ଼ିଥିଲି। ସତ୍ୟ ସିଂ ମତେ ପଚାରିଲେ – 'କ'ଣ କିଓ ?'

– ଗୋପବନ୍ଧୁ ଦାଶ ୧୯୦୪ ମସିହାରେ ଏକ 'ପ୍ରାର୍ଥନା' ଲେଖିଥିଲେ ଯେ ଓଡ଼ିଶାକୁ ବଙ୍ଗଳା ଓ ବିହାର ଠାରୁ ଅଲଗା କରେଇ ମଧ୍ୟପ୍ରଦେଶ ସଙ୍ଗେ ମିଶେଇ ଦିଆଯାଉ। ଯାହା ମଧୁସୂଦନ ଦାସ ପସନ୍ଦ କରି ନଥିଲେ। ଏଇ କଥାରେ ଜୟନ୍ତ ମିଶ୍ର ବା ଅନ୍ୟ କେହି ରାଗିବାର କିଛି ନାହିଁ। ଇତିହାସ ଇତିହାସ ଛଡ଼ା ଅନ୍ୟକିଛି ନୁହେଁ। ସେଥିପାଇଁ ଆମେ କଳି କାହିଁକି କରିବା ?

– କଳିଟା କ'ଣ ସେଥିପାଇଁ ? କଳିଟା ହେଉଛି ଗୋପବନ୍ଧୁଙ୍କୁ ଯେଉଁମାନେ ଆଧୁନିକ ଓଡ଼ିଶାର ନିର୍ମାତା ଓ ପିତା ଭାବେ ଉପସ୍ଥାପିତ କରିବା ପାଇଁ ଚାହାନ୍ତି। ତାଙ୍କର ଓ ଇତିହାସକୁ ଇତିହାସ ବୋଲି ମାନୁଥିବା ଲୋକଙ୍କର –

ରବିବାବୁଙ୍କର ଏଇତକ କଥାରେ ମୁଁ ଚୁପ୍ ହେଇଗଲି।

– ଆପଣମାନେ ଜାଣନ୍ତି ମଧୁବାବୁ କାହିଁକି ଗୋପବନ୍ଧୁଙ୍କ ଏଇ ପ୍ରଚାର ପତ୍ର ଦ୍ୱାରା

କ୍ଷୁନ୍ନ ହୋଇଥିଲେ ?

ଆମେ ନ ଜାଣିଥିବାର ସୂଚନା ଦେଲୁ।

– ତାର ଉତ୍ତର ଦେବ ଡଃ ସୁମିତ ସରକାରଙ୍କର "The Swedeshi Movement is Bengal 1903-1908" ପୁସ୍ତକ। ମଧୁବାବୁ ଜାଣିଥିଲେ ବଙ୍ଗଭଙ୍ଗ ପରେ ଓଡ଼ିଆମାନେ ବଙ୍ଗାଳୀ ଓ ବିହାରୀଙ୍କ ଭିତରେ ଏକ balance of power ରକ୍ଷାକରିବାର ଅବସ୍ଥାକୁ ଆସିଯାଇଛନ୍ତି। ୧୯୦୧ର ଜନଗଣନା ଅନୁସାରେ ବଙ୍ଗଳୀ ଓ ବିହାରୀ ପ୍ରାୟତଃ ସମାନ ଜନସଂଖ୍ୟାର ଥିଲେ ଏବଂ ଓଡ଼ିଆମାନେ ଯାହାକୁ ସମର୍ଥନ କରିବେ ସେମାନେ ଶକ୍ତିଶାଳୀ ହେବେ। ସେଇ ଅବସ୍ଥାର ପୂର୍ବରୁ ଓ ଉତ୍କଳ ସମ୍ମିଳନୀ ଆରମ୍ଭ ହେବା ପୂର୍ବରୁ ଲର୍ଡ କର୍ଜନଙ୍କ ସହ ଦେଖାକରି ମଧୁବାବୁ ସିମୂଳାଠାରେ ଓଡ଼ିଆ ଭାଷାଭାଷୀ ଅଞ୍ଚଳ ସବୁର ଏକ ସମୀକ୍ଷା ଦେଇଥିଲେ ଯାହାକୁ ଲର୍ଡ କର୍ଜନ ମ୍ୟାପ୍ ପକେଇ ଦେଖିଲେ ଏବଂ ଓଡ଼ିଶା ଭ୍ରମଣରେ ଆସିବା ପାଇଁ ମନସ୍ଥ କରିଥିଲେ। ଜାଣନ୍ତି ବାରିଷ୍ଟର ହାଜ୍‌ରା ଏ ବିଷୟରେ କ'ଣ ଲେଖନ୍ତି ? Lord Curzon... asked the secretary to telegraph the Bengal Government to arrange for his visit to Orissa. While syaing good bye to Mr. Das, he said "The Oriyas must congratulate themselves in having such an able champion in you to fight their cause." After a few months of the said interview Lord Curzon visited Orissa, an again had a long discussion with Mr. Das at Puri. This was the first time a (vicerory) visited Orissa. ଗୋପବନ୍ଧୁ ସେତେବେଳେ ବୋଧେ ମଧୁବାବୁଙ୍କୁ ଠିକ୍ ବୁଝିପାରି ନଥିଲେ। ତାଙ୍କର ବୟସ ସେତେବେଳେ ୨୫ ବର୍ଷ ମାତ୍ର ଏବଂ ମଧୁବାବୁଙ୍କ ବୟସ ୫୩। ମଧୁବାବୁ ମଧ ଜାଣିଥିଲେ ଯେ ଲର୍ଡ କର୍ଜନଙ୍କ ବଙ୍ଗ–ବିଭାଜନ Scheme ଫଳରେ ମେଦିନପୁର ଓ ସିଂହଭୂମ ଜିଲ୍ଲା ଓଡ଼ିଶାର ଅଂଶଭାବେ ପରିଗଣିତ ହେବ ନାହିଁ। ତେଣୁ ସେବେଳର ସେଣ୍ଟ୍ରାଲ ପ୍ରିଭିନ୍‌ସ ସହ ଯଦି ଓଡ଼ିଶା ମିଶେ, ତା'ହେଲେ ଓଡ଼ିଶାରୁ ଅନେକ ଓଡ଼ିଆଭାଷୀ ଅଞ୍ଚଳ ପୃଥ ହେଇ ରହିବ। ତୃତୀୟତଃ ମଧ୍ୟପ୍ରଦେଶ ସେତେବେଳେ ଜଣେ ଚିଫ୍ କମିଶନରଙ୍କ ଦ୍ୱାରା ଶାସିତ – ଯେଉଁଠି ବିଶ୍ୱବିଦ୍ୟାଳୟ, ହାଇକୋର୍ଟ ଇତ୍ୟାଦି କିଛି ନାହିଁ ଅଥଚ ବଙ୍ଗଳାରେ ବିଶ୍ୱବିଦ୍ୟାଳୟ, ହାଇକୋର୍ଟ ଏବଂ ଏକ ବଡ଼ ବନ୍ଦର ଅଛି। କଲିକତାକୁ ବହୁ ଓଡ଼ିଆ ଭରଣପୋଷଣ ପାଇଁ ଯାଆନ୍ତି। ପୁଣି ସେତେବେଳେ କଲିକତା ଭାରତର ରାଜଧାନୀ। ତେଣୁ ମଧୁବାବୁଙ୍କୁ ଯିଏ ଯେତେ ବଙ୍ଗପ୍ରେମୀ କହୁନା କାହିଁକି – ସେ ଯେ ତାଙ୍କ ପାଗଳ ଅଭିଜ୍ଞତା ଓ ଦୂରଦୃଷ୍ଟି ଫଳରେ ଗୋପବନ୍ଧୁଙ୍କ ପ୍ରାର୍ଥନା ପ୍ରତି ବିରତ ହେଇଥିବେ ଏଥିରେ କିଛି ସନ୍ଦେହ ନାହିଁ।

– ମଧୁବାବୁ ବଙ୍ଗପ୍ରେମୀ ଥିଲେ ? ତା' ଯଦି ହେଇଥାନ୍ତା ତା'ହେଲେ ସାର୍ ସୁରେନ୍ଦ୍ରନାଥ ବାନାର୍ଜୀଙ୍କୁ ବେଖାତିର କରି ଉତ୍କଳ ସମ୍ମିଳନୀର ଆୟୋଜନ କାହିଁକି କରିଥିଲେ ? ନରିମିଶ୍ରଙ୍କର ପ୍ରଶ୍ନ ବଳରେ ଉତ୍ତର ରବିବାବୁଙ୍କୁ ବୋଧେ ଉତ୍ସାହିତ କଲା।

– ଏଇ ବିଷୟରେ ପଣ୍ଡିତ ନୀଳକଣ୍ଠ ଦାଶ କ'ଣ କୁହନ୍ତି ଟିକେ ଶୁଣନ୍ତୁ – 'The next event worth mentioning is when he (Madhu Babu) wanted Pandit Gopabandhu Das, whom he had made for a time his junior in the profession at Cuttack, to enter the old Bihar and Orissa legislative council. Of coruse it was a small and rather insignificant event in the highly evenful life of Mr. M. S. Das x x x He paid no need to the many sivister attempts to put Pandit Gopabandhu out of the way x x x he called many such attempts mean and such motives unworthy. This demonstrated how he could feel and work for a cause he took up in the belief that he did it for the well being of the race. x x x In this connection it is interesting that Gopabandhu practically began his public life in 1904 by opposing Mr. Das on the issue as to whether Orissa with Sambalpur and other Oriya tracts should remain in Bengal or go to form a part of the Central provinces. x x x Mr. M. S Das did not ofcourse like all there activities of Gopabandhu for he was not aman to brook opposition in ideals and even in methods of work. But he was not selfish and he saw originality and germs of greatness in Gopabandhu even then" ଏକଥା ଯଦି ସତ; ଆମେ ଗୋପବନ୍ଧୁ ବା ମଧୁସୂଦନଙ୍କୁ ନିଜ ତରଫରୁ ଟାଣିନେଇ ଆପୋଷରେ କଳି କରିବା କାହିଁକି ?

– ବୟସରେ ସାନ ହେଲେ କ'ଣ ହେଲା ଗୋପବନ୍ଧୁଙ୍କ ପରି ମହାଭାରତୀୟ ସ୍ରୋତରେ କ'ଣ ମଧୁବାବୁ ଓଡ଼ିଆଙ୍କୁ ବୁହାଇ ପାରିଥିଲେ ? ସେ ଏକ ଉଗ୍ର ପ୍ରାଦେଶିକ ମନୋଭାବାପନ୍ନ ବ୍ୟକ୍ତିଥିଲେ – ମିଶ୍ରଙ୍କର ମନ୍ତବ୍ୟରେ ରବିବାବୁ ଅଳ୍ପ ହସିଲେ –

– ୧୯୧୬ ମସିହାରେ ମାଡ୍ରାସରେ ଅନୁଷ୍ଠିତ ହୋଇଥିବା ଅଧିକ ଭାରତୀୟ ଖ୍ରୀଷ୍ଟିୟାନ କନଫରେନ୍‌ସରେ ସଭାପତିତ୍ୱ କରି ମଧୁବାବୁ କହିଥିଲେ – We are Indians, Indian blood runs in our veins, Indian history, Indian traditions, are the springs from which we draw our inspirations; our hopes for the future greatness of India are built on the glorious achievements of ancient India x x x The guiding principle of our communal life has hitherto been and will always be 'peace on earth and goodwill towards mankind' ପୁଣି ତା ପୂର୍ବରୁ ୧୯୧୫ ମସିହାରେ ଏଲହାବାଦଠାରେ ସଭାପତିତ୍ୱ କରି ସେ କହିଥିଲେ – "The thing that impressed me most forcibly when I was a Hindu and induced me to embrace christianity was the prayer, "Father forgive them, for they know not what they do" x x x I could not have a better ideal... we all know when these words were uttered.

ରବିବାବୁଙ୍କ କଥା ସଂପୂର୍ଣ୍ଣ ହେବା ଆଗରୁ ସତ୍ୟ ସିଂ ପଚାରିଲେ –

– କେବେ ଯୀଶୁ ଏ କଥା କହିଥିଲେ ?

– କ୍ରସ୍‌ରେ ସେତେବେଳେ ତାଙ୍କୁ କଣ୍ଟା ବାଡ଼େଇ ଝୁଲେଇ ଦିଆ ହେଇଥିଲା।

– ଓ! ମୁଁ ଉତ୍ତର ଦେଇଥିଲି ସତ୍ୟ ସିଂଙ୍କୁ।

ରବିବାବୁ ପୁଣି ଆରମ୍ଭ କଲେ – 'ମଧୁବାବୁ ସେଇ ଭାଷଣର ଶେଷରେ କହିଲେ – When my relation with the world ceases I shall commune with my conscience and with my God; and if at that time, God says 'Thou hast done thy duty'. I do not care what the world thinks of me. ତାଙ୍କ ପାଇଁ ସେ duty ଟା କ'ଣ ଥିଲା ଜାଣନ୍ତି ?

ଜନମ କାଳରୁ ମୁଖେ ଦେଇ ସନ୍ତନ
ମାତା ଶିଖାଇଲା ପରାର୍ଥେ ଜୀବନ।

– ସତରେ ହରି – ଆମ ଓଡ଼ିଆ ପରମ୍ପରାର କି ନିଛକ ଅଭିବ୍ୟକ୍ତି! ଠିକ୍ ଯେପରି ଭୀମା ଭୋଇଙ୍କର –

ଜଗତେ କେବଳ ଦୁଃଖ ଅପ୍ରମିତ
ଦେଖୁ ଦେଖୁ କେବା ସହୁ
ଏ ଜୀବନ ପଛେ ନର୍କେ ପଡ଼ିଥାଉ
ଜଗତ ଉଦ୍ଧାର ପାଉ।

– ଆରେ ରହ! ହରିମିଶ୍ରେ ତାଗିଦା କଲେ ସତ୍ୟ ସିଂଙ୍କୁ। ଆପଣ ଜଗନ୍ନାଥ ବଲ୍ଲଭ ଭିତରର ଏକ ଚଉତରା ଓ ମଞ୍ଚ ବିଷୟରେ କିଛି କହୁଥିଲେ –

– ଶ୍ରୀମନ୍ତ ବାବୁ କୁହନ୍ତୁ – ଏ ଚଉତରା, ଯାହା ଉପରେ ଚନ୍ଦନ ଯାତ୍ରାବେଳେ ଆଜିକାଲି ଲୋକେ ତେଲ ମାଖି ହେଇ, ପେଟ୍ରୋଲମାକ୍ସ ଜାଳି, ଭାଙ୍ଗ ବାଟି – ବେକରେ ମାଳା ପକେଇ ଗାଧେଇବାକୁ ସଜବାଜ ହୁଅନ୍ତି। ପୁଣି ଗାଧୋଇ ସାରି ବେଳେବେଳେ ପଙ୍ଗତ କରନ୍ତି – ତା'ର ଐତିହାସିକ ମୂଲ୍ୟ କ'ଣ ?

ଶ୍ରୀମନ୍ତ ବାବୁ ସେତେବେଳକୁ ଚୁପ୍ ହେଇ ସାରିଥିଲେ। ରିକ୍ସାକୁ କେତେବେଳୁ ବିଦା କରି ଦିଆ ହେଇଥିଲା। ଏକ ବିରାଟ ଫାଟକ ଡେଇଁ ଆମେ ଜଗନ୍ନାଥ ବଲ୍ଲଭର ବଗିଚା ଭିତରକୁ ପ୍ରବେଶ କରୁଥିଲୁ। ରବିବାବୁ ନେତୃତ୍ୱ ନେଉଥିଲେ। ଚଉତରାରେ ପହଞ୍ଚି ରବିବାବୁ ଏକ ବହୁ ପୁରୁଣା ବହି କାଢ଼ିଲେ। ଉତ୍କଳ ସମ୍ମିଳନୀର ୫ମ ଅଧିବେଶନର ବିବରଣୀ। ଉପର ମଲାଟ ନାହିଁ। ପଛରେ ଜଗବନ୍ଧୁ ସିଂହ, ସେକ୍ରେଟାରୀଙ୍କ ଦସ୍ତଖତ ହିସାବ ଫର୍ଦରେ। ପ୍ରଥମ ପୃଷ୍ଠାରେ ଲେଖାଅଛ – ସ୍ଥାନ। ଯଦିଓ ପୁରୀ ସହର ନରେନ୍ଦ୍ର ପୁଷ୍କରଣୀ ସନ୍ନିକଟ ଶ୍ରୀ ଜଗନ୍ନାଥ ବଲ୍ଲଭ ମଠ ମଧ୍ୟସ୍ଥିତ ପଡ଼ିଆରେ ନିର୍ମିତ ସୁବୃହତ ଓ ସୁସଜ୍ଜିତ ମଣ୍ଡ। ସମୟ: ସନ୍ ୧୯୦୮ ମସିହା ଏପ୍ରିଲ ମାସ ୧୮୧୯

ତାରିଖ। ମୁଁ ବହିଟିକୁ ଓଲଟ ପାଲଟ କରୁଥିଲି –

– ସେଇ ବର୍ଷ କବିବର ରାଧାନାଥ ଦେହାନ୍ତ ହୋଇଥାଏ। ତାଙ୍କ ସ୍ମୃତି ରକ୍ଷା ପାଇଁ ଏକ ବନ୍ଦୋବସ୍ତ କରିବା ପାଇଁ 'ନବସଂବାଦ' ଖବର କାଗଜର ସମ୍ପାଦକ ତାର ଦ୍ୱାରା ଅନୁରୋଧ ଜଣେଇ ଥିଲେ। ବ୍ୟାସକବି ଫକୀର ମୋହନ ସେନାପତି ଥିଲେ ଅନ୍ୟତମ ବିଶିଷ୍ଟ ସଭ୍ୟ। ଗୋପବନ୍ଧୁ ସେତେବେଳେ ୩୨ ବର୍ଷର ଉଦୀୟମାନ ଯୁବନେତା। ମୋଟରେ ୫ ହଜାର ସଭ୍ୟ ସାରା ଓଡ଼ିଶାରୁ ଅଂଶ ଗ୍ରହଣ କରିଥିଲେ ଏବଂ ସେଇ ସଭାରେ ମଧୁବାବୁ ଓଡ଼ିଆମାନଙ୍କୁ ଦୀକ୍ଷାମନ୍ତ୍ର ଦେଇଥିଲେ – ଆପଣ ୫୧ ପୃଷ୍ଠାର ଶେଷ ଦିଗକୁ ମଧୁବାବୁଙ୍କ ଉଦ୍‌ବୋଧନଟା ଟିକେ ପଢ଼ି ଶୁଣାନ୍ତୁ...

ସେ ମୋତେ ଚାହିଁ ଏକ ଆଦେଶାତ୍ମକ ଭଙ୍ଗୀରେ କହିଲେ। ସେତେବେଳକୁ ଆମେ ସମସ୍ତେ ପଥର ଚଉତରା ଉପରେ ବସି ସାରିଥିଲୁ। ଗୌର ପଟ୍ଟନାୟକ ସିଗାରେଟ୍ କାଢ଼ି ସମସ୍ତଙ୍କ ଆଡ଼କୁ ବଢ଼େଇ ଦେଲେ – ମୁଁ ଆରମ୍ଭ କଲି ପଢ଼ିବା –

"ଭାଇମାନେ, ସଭାପତି ମହାଶୟଙ୍କ ବକ୍ତୃତାର ଶେଷ ଭାଗରେ ସେ କହି ଅଛନ୍ତି ଯେ ଆଜି ସମ୍ମିଳନୀର ବିଦ୍ୟାରମ୍ଭ ଦିନ। ବିଶ୍ୱନାଥ (କର) ବାବୁ ମଧ ତାଙ୍କ ବକ୍ତୃତାରେ ଉକ୍ତ ବିଷୟ ଉଲ୍ଲେଖ କରି ଅଛନ୍ତି। ଉତ୍କଳବାସୀ ସମ୍ମିଳନୀ। ସମ୍ମିଳନୀ ତୁମ ଆମ ଛଡ଼ା ଆଉ କିଛି ନୁହେଁ। ଯେତେବେଳେ ଉତ୍କଳଭାଷୀ ଓ ଉତ୍କଳବାସୀମାନେ ଏକାଠି ହେଉଁ ତାହା ସମ୍ମିଳନୀ। ଯେବେ ସମ୍ମିଳନୀର ଆଜି ବିଦ୍ୟାରମ୍ଭ ତେବେ ସମସ୍ତ ଉତ୍କଳବାସୀ ଓ ଉତ୍କଳଭାଷୀଙ୍କର ଆଜି ବିଦ୍ୟାରମ୍ଭ।

ଉତ୍କଳ ଜନନୀ ଓ ଭାରତ ଜନନୀଙ୍କର କିଛି ପ୍ରଭେଦ ନାହିଁ। ଶରୀରର କୌଣସି ଅଂଶରେ ପୀଡ଼ା ହେଲେ ସେହି ଅଂଶର ଚିକିତ୍ସା କରିବାକୁ ହେବ। କିନ୍ତୁ ଅଂଶ ବିଶେଷର ଚିକିତ୍ସା ଦ୍ୱାରା ସମସ୍ତ ଶରୀରର ଉନ୍ନତି ହେବ। ଉତ୍କଳର ଚିକିତ୍ସାର ଉଦ୍ଦେଶ୍ୟ ଭାରତର ଉନ୍ନତି।

ସଭାପତି ମହାଶୟ ତାଙ୍କ ବକ୍ତୃତାରେ 'ସଂଜୀବନୀ ମନ୍ତ୍ର'ର ଉଲ୍ଲେଖ କରିଛନ୍ତି। ଉତ୍କଳର ଅତୀତ ଗୌରବର କଥା ମଧ ଉଲ୍ଲେଖ କରିଛନ୍ତି। କିନ୍ତୁ ବର୍ତ୍ତମାନ ଅବସ୍ଥା କଅଣ? ବର୍ତ୍ତମାନ ଉତ୍କଳବାସୀ ସମସ୍ତଙ୍କ ଘୃଣାର୍ହ। ଅତୀତର କଥା ସ୍ମରଣ କଲେ ଆମ୍ଭେମାନେ ନିଜ ନିଜକୁ ଘୃଣା କରିବୁ।

ବଡ଼ ଦେଉଳ ବାଲିରେ ପୋତି ହେଇ ଯାଇଥିଲା। ରାଜାଙ୍କ ଘୋଡ଼ାଟାପୁ ବାଜିବାରୁ ରାଜା ତାକୁ ପୁନରୁଦ୍ଧାର କରିଥିଲେ। "ଏହି ସ୍ଥାନରେ ବଡ଼ ଦେଉଳକୁ ଚାହଁ ଓ ଜାତିର ପୁନରୁଦ୍ଧାର କର" – ଏହା ଆମମାନଙ୍କର ବୀଜମନ୍ତ୍ର ହେବା ଆବଶ୍ୟକ। ଜାତୀୟ ଜୀବନରେ ଏହି କଥାକୁ ବୀଜମନ୍ତ୍ର କରି ଜପ। ଯେଉଁ ପୂର୍ବ ପୁରୁଷମାନେ ଏହି କୀର୍ତ୍ତି କରିଥିଲେ ସେହିମାନଙ୍କର ରକ୍ତ ମୋ ଶରୀରରେ ଅଛି। କିନ୍ତୁ ତଦନୁସାରେ ମୁଁ କାର୍ଯ୍ୟ କରୁଛି କି ନା ଏହା ସମସ୍ତେ ଭାବିବା ଉଚିତ। ଏଠାରେ ମୁଁ ଗୋଟିଏ ଦୃଷ୍ଟାନ୍ତ ଦେଉଅଛି।

ଗୋଟିଏ ଭଲ ଜାତି ଡାହାଳ କୁକୁର ଛୁଆକୁ ଆଣ। ଗୋଟିଏ ବାଘକୁ ତାକୁ ଦେଖାଇ ଦିଅ। ତାର ବାଘକୁ ମାରି ପାରିବାକୁ ବଳ ଥାଉ ବା ନଥାଉ ସେ ବାଘକୁ କାମୁଡ଼ିବାକୁ ଦଉଡ଼ିଯିବ। ଭାଇ ତାକୁ ପଚାର – 'ତୁତ ପିଲାଟିଏ ବାଘକୁ ମାରି ପାରିବୁ ବୋଲି ଦଉଡୁଛୁ?' ସେ ଉତ୍ତର ଦେବ – 'ମୁଁ ଜାଣୁଛି ଯେ ମୁଁ ବାଘକୁ କାମୁଡ଼ି ପାରିବି ନାହିଁ। କିନ୍ତୁ ମୁଁ ମୋ ଜାତିର ନାମ ବୁଡ଼େଇବି ନାହିଁ।' ଯେଉଁ ଜାତି ବଡ଼ଦେଉଳ ଭୁବନେଶ୍ୱର ଓ ଅନ୍ୟାନ୍ୟ ଶିଳ୍ପ କାର୍ଯ୍ୟମାନ କରିଥିଲେ ସେହି ଜାତିର ରକ୍ତ ଆମ୍ଭ ଦେହରେ ଅଛି କି? ବିଦ୍ୟାରମ୍ଭ ସମୟରେ ଏହି କଥା ଭାବ – ନିଜ ଜାତୀୟ ଜୀବନ ଆପଣା ଦେହରେ ଅଛି କି ନାହିଁ? ଯେବେ ନଥାଏ, ସେ କିପରି ହେବ ଚେଷ୍ଟା କର। ଜାତୀୟ ଜୀବନ ବ୍ୟକ୍ତିଗତ ଜୀବନରୁ ପୃଥକ। 'ଜାତି ପାଇଁ ବାଟରେ ଭିକ୍ଷା କରି ମରିବି' ଏହିପରି ପଣ ନକରିବା ପର୍ଯ୍ୟନ୍ତ ଜାତୀୟ ଜୀବନର ସଂଚାର ହେବ ନାହିଁ। ବ୍ୟକ୍ତିଗତ ଜୀବନ ସ୍ୱାର୍ଥପର ସ୍ୱାର୍ଥପରତା ଯେତେ ବୃଦ୍ଧି ହେବ – ଜାତୀୟ ଜୀବନ ସେତିକି କମିବ। ସ୍ୱାର୍ଥପରତା ଯେତେ କମିଯିବ ଜାତୀୟ ଜୀବନ ସେତିକି ବୃଦ୍ଧିହେବ। x x x ସମସ୍ତେ ଭାରତ ସନ୍ତାନ। ସମସ୍ତେ ଏକ ରକ୍ତ ମାଂସ ସଂଭୂତ। ଯେତେବେଳେ ଏ ଜ୍ଞାନ ହେବ, ସେତେବେଳେ ଜାତୀୟ ଜୀବନର ଅଭାବ ରହିବ ନାହିଁ। ଏହାସହ ଉତ୍କଳର ଅସ୍ତମିତ ଗୌରବର ବିଷୟ ଥରେ ଚିନ୍ତାକର। ଯେତେବେଳେ ଶିଶୁ ସ୍ତନ ପାନ କରୁଥାଏ, ତେତେବେଳେ ବିଶ୍ୱାମ୍ଳା ପୂର୍ଣ୍ଣନୟନରେ ମାତାର ମୁଖପ୍ରତି ଦୃଷ୍ଟି ରଖିଥାଏ। ଏହିଠାରେ ଆମ୍ଭେମାନେ ଉତ୍କଳ ଜନନୀ ତଥା ଭାରତ ଜନନୀର କୋଡ଼ରେ ବସିଥାଉଁ। ସମସ୍ତେ ଏହିକଥା ଭାବ ଓ ପ୍ରତିଜ୍ଞାକର ଯେ x x x "ମୁଁ ପ୍ରତିଦିନ ପାଞ୍ଚମିନିଟ୍ ସମସ୍ତ ଦେଶର କଥା ଭାବିବି ଏବଂ ସମ୍ମିଳନୀ ସକାଶେ ଉତ୍କଳ ନିମନ୍ତେ ଓ ଭାରତ ନିମନ୍ତେ ଅନ୍ତତଃ ପାଞ୍ଚମିନିଟ୍ ସମୟ ବ୍ୟୟ କରିବି।" ଏହି ମନ୍ତ୍ର ସମସ୍ତେ ମୁହଁରେ ପାଟିକରି କୁହ। ଏହା ସମ୍ମିଳନୀର ବିଦ୍ୟାରମ୍ଭ।

ସଭାରେ ଉପସ୍ଥିତ ଥିବା ସମସ୍ତ ଉତ୍କଳୀମାନେ ଦଣ୍ଡାୟମାନ ହୋଇ ଉଚ୍ଚସ୍ୱରରେ ଏହି ବିଦ୍ୟାରମ୍ଭ ମନ୍ତ୍ର ପାଠ କରିଥିଲେ। ମଧୁବାବୁ ପ୍ରକୃତରେ ଅବଧାନ ସ୍ୱରୂପ ଉକ୍ତମନ୍ତ୍ର ପାଠ କରାଇଥିଲେ। ଏହା ଉତ୍ତାରୁ . . .

– ଛାଡ଼ନ୍ତୁ! ସେତେବେଳେ ମଧୁବାବୁଙ୍କ ବୟସ ୬୦ ବର୍ଷ। କାଢ଼ନ୍ତୁ ପୃଷ୍ଠା ୭୯। ମୁଁ ଓଲଟେଇ ୭୯ ପୃଷ୍ଠାରେ ପହଞ୍ଚିଲି।

– ତଳଆଡ଼କୁ ଥିବ ୧୧ଶ ପ୍ରସ୍ତାବ। ସେଇଠୁ ପଢ଼ନ୍ତୁ।

ମୁଁ ପଢ଼ିବାକୁ ପୁଣି ଆରମ୍ଭ କଲି।

"ପ୍ରସ୍ତାବକ – ଶ୍ରୀଯୁକ୍ତ ଫକୀର ମୋହନ ସେନାପତି କହିଲେ – ସଭାପତି ମହୋଦୟ ଓ ଭାଇମାନେ! ଓଡ଼ିଶା ଖଣ୍ଡ ବିଖଣ୍ଡ ହୋଇ ନାନାଦି ଅସୁବିଧାରେ ପଡ଼ିଥିଲା ଓ ପଡ଼ିଅଛି। ଯେ ବ୍ୟକ୍ତି ଆମ୍ଭମାନଙ୍କ କଥା ରାଜାଙ୍କୁ ଜଣାଇ ଅଛନ୍ତି ସେ ଆମର ବିଶେଷ ଉପକାର କରି ଅଛନ୍ତି। ସେ ଉପକାର ଆମ୍ଭେମାନେ ପ୍ରତ୍ୟାଶା କରିନାହିଁ। କିନ୍ତୁ ସେ ଅଯାଚିତ

ଭାବରେ ଯାଇଁ ବିଲାତରେ ଆମ୍ଭମାନଙ୍କ କଥା କହି ଆସିଅଛନ୍ତି। ଆମ୍ଭେମାନେ କିଛି ପଇସା କଉଡ଼ି ଦେଇ ତାଙ୍କୁ ବିଲାତକୁ ପଠାଇ ନଥିଲୁଁ। ମଧୁବାବୁ ଦେଶପାଇଁ ଢ଼େର ଉପକାର କରି ଅଛନ୍ତି। କରୁଅଛନ୍ତି ଓ ଭବିଷ୍ୟତରେ ଯେତେଦିନ ବଞ୍ଚିବେ କରିବେ। ଦୁର୍ଭିକ୍ଷରେ ବିଶେଷ ଉପକାର କରି ଅଛନ୍ତି, ସ୍ୱଦେଶ ହିତ ତାଙ୍କର ସର୍ବଦା ଚିନ୍ତାର ବିଷୟ ଏବଂ ତହିଁ ପ୍ରତି ବରାବର ସେ ମନ, ପ୍ରାଣ ଓ ଧନ ଢ଼ାଳିଦେଇ ଅଛନ୍ତି। ଏହିପରି ଗୋଟିଏ ଗୋଟିଏ ଲୋକଙ୍କ ଚେଷ୍ଟାରେ ଜାତି ଉଠିବସେ। ଦେଶର ମଙ୍ଗଳ ପାଇଁ ଭଗବାନ ଏପରି ଗୋଟିଏ ଗୋଟିଏ ଲୋକଙ୍କୁ ପଠାନ୍ତି। ମଧୁବାବୁ ତାଙ୍କ ଚେଷ୍ଟାଦ୍ୱାରା ଓଡ଼ିଶାକୁ ୫୦ ବର୍ଷ ଆଗକୁ ଟାଣିନେଲେ। x x x ଚନ୍ଦନ ଗଛର ଆଖପାଖରେ ଥିବା ଛୋଟ ଗଛମାନଙ୍କର ମଧ୍ୟ ବାସନା ହୁଏ। x x x ମଧୁ ମରିଯିବ କିନ୍ତୁ ତାଙ୍କ ଆତ୍ମା ଓଡ଼ିଶାକୁ ସୁବାସିତ କରିବ। x x x ଧନ୍ୟବାଦ ଦେବା ଦ୍ୱାରା ତାଙ୍କ ଉପକାର ସୁଝାଯାଇ ପାରେ ନାହିଁ। ତଥାପି ତାଙ୍କୁ ଧନ୍ୟବାଦ ଦେବାପାଇଁ ଉପରୋକ୍ତ ପ୍ରସ୍ତାବଟି ମୁଁ ଏ ସମ୍ମିଳନୀ ସମକ୍ଷରେ ଆଗତ କରୁଅଛି।'

– ବାସ୍! ବର୍ତ୍ତମାନ ଆପଣ ୮୧ ପୃଷ୍ଠାରେ ମଧୁବାବୁଙ୍କୁ ଉତ୍ତର ପଢ଼ନ୍ତୁ।

ମୁଁ ୮୧ ପୃଷ୍ଠାରୁ ପଢ଼ିବାକୁ ଆରମ୍ଭ କଲି –

"ଏଥି ଉତ୍ତାରୁ ଶ୍ରୀଯୁକ୍ତ ମଧୁସୂଦନ ଦାସ ସି.ଆଇ.ଇ. ମହାଶୟ ସଭାପତିଙ୍କ ଅନୁମତି ନେଇ କହିଲେ – ସଭାପତି ମହୋଦୟ ଓ ଭାଇମାନେ। ମୋର ଶରୀର ପୀଡ଼ିତ ଥିବାରୁ ମୋର କଥା କହିବାର ଶକ୍ତିନାହିଁ। ସମ୍ମିଳନୀରୁ ଧନ୍ୟବାଦ ପାଇବାର ମୁଁ ଉପଯୁକ୍ତ ବ୍ୟକ୍ତି ନୁହେଁ। ଏ ନିର୍ଦ୍ଧାରଣରେ ଲେଖାଅଛି ସେ "ଉତ୍କଳର ଅଭାବ ଓ ଅବସ୍ଥାପ୍ରତି ବିଲାତର ଜନସାଧାରଣଙ୍କର ମନ ଆକୃଷ୍ଟ କରାଇଥିବା ଇତ୍ୟାଦି"। ଭାଇ ପଚାରେ, ମୋର ଏହି ଯେ ଶରୀର ସେ କ'ଣ? ମୋର ଶରୀର ଉତ୍କଳ ଜନନୀର ଶରୀରର ଏକ ଅଂଶ ମାତ୍ର। ମୁଁ ଜଣେ ଓଡ଼ିଆ। ମତେ ଯେ ଦେଖିବ, ସେ ଉତ୍କଳର ଅଭାବ ଦେଖିବ। ନିଜର ଶରୀର ବା ନିଜର ଅଭାବ ଅନ୍ୟପାଖରେ ଦେଖାଇବା ପାଇଁ ଧନ୍ୟବାଦର ଆବଶ୍ୟକ ନାହିଁ। ଉତ୍କଳମାତାଙ୍କର ଶରୀର ଛିନ୍ନ। ମାତାଙ୍କ ଶରୀର କ୍ଷତ ହୋଇ ଅଛି। ଏକଥା କହିଲେ, ସନ୍ତାନର ଧନ୍ୟବାଦ ପାଇବାର କି ଦାବି ଅଛି। ଉତ୍କଳରେ ଓକିଲାତ କରି ଓଡ଼ିଆ ଭାଇମାନଙ୍କ ଠାରୁ ପଇସା ରୋଜଗାର କରିଥିଲି। ସେହି ପଇସା ମୁଁ ସେହି ଉତ୍କଳ ଜନନୀଙ୍କ ପୁତ୍ର ସନ୍ତାନ ଓଡ଼ିଆ ଭାଇଙ୍କ ସକାଶେ ଖର୍ଚ୍ଚ କଲି ବୋଲି ମତେ ଧନ୍ୟବାଦ ଦେବାର କିଛି ଆବଶ୍ୟକ ନାହିଁ।

x x x ଭାଇ ଆଜି ସମୁଦ୍ରକୂଳକୁ ବୁଲିବାକୁ ଯାଇଥିଲି। ଦେଖିଲି ଗୋଟିଏ ଢ଼େଉ ଆସିଲା। ତାକୁ ବାଲି ବାଧା ଦେଲା। ଢେଉ ଖଣ୍ଡ ଖଣ୍ଡ ହୋଇ ଭାଙ୍ଗି ଚୂର୍ଣ୍ଣିଭୂତ ହେଲା। ପାଣିଟି ଯାହା କଳା ଦେଖାଯାଉଥିଲା, ତାହା ଶୁଭ୍ରବର୍ଣ୍ଣ ଦେଖାଗଲା। ଭାଇ! ଏଠାରେ ପଚାରେ, ଲହରୀଟି ଶୁଭ୍ରବର୍ଣ୍ଣ ଧାରଣ କଲାପରି ମତେ ଯାହା ଦେଖାଗଲା ତାହା ପ୍ରକୃତ କି? ତାହା ନୁହେଁ। ଲହରୀଟି ବାଧାପାଇ ଫେରି ଯାଉଁ ଯାଉଁ ପଛକୁ ଅନେଇ ହସିଲା

ଏବଂ କହିଲା, ରେ ବାଲି! ତୁ ବାଧା ଦେଇ ମୋର କ'ଣ କରିବୁ? ଦେଖ୍, ମୁଁ ସିନା ହଟିଗଲି, ମୋ ପଛରେ ଲକ୍ଷ ଲକ୍ଷ ଢେ଼ଉ ଆସୁଛନ୍ତି, ସେମାନେ ତୋତେ ଅତିକ୍ରମ କରିବାକୁ ଚେଷ୍ଟା କରିବେ। ତୁ କେତେ ବାଧା ଦେବୁ? ସେହିପରି ମୁଁ ଚେଷ୍ଟା କରି ହାରିଯାଇ ପାରେ, କିନ୍ତୁ ମୁଁ ଯେତେବେଳେ ଦେଖିବି ଯେ ମୋ ପଛରେ ଲକ୍ଷ ଲକ୍ଷ ଉତ୍କଳୀୟ ଅଛନ୍ତି ଏବଂ ଉତ୍କଳ ଜନନୀର ଅଭାବ ମୋଚନ ପାଇଁ ଦଉଡୁ ଅଛନ୍ତି, ମୁଁ ମୃତ୍ୟୁଶଯ୍ୟାରେ ଏହି କଥା ଦେଖି ଢେ଼ଉ ପରି ହସି ହସି ଯଦି ମରେ, ତେବେ ମୋର ଜୀବନକୁ ସାର୍ଥକ ମନେ କରିବି। ଏହାହିଁ ମୋର ଶେଷ ଇଚ୍ଛା।

– ଆଚ୍ଛା! ବର୍ତ୍ତମାନ ଆପଣ ଏ ବହିଟିର ୮୭ ପୃଷ୍ଠା ଖୋଲନ୍ତୁ।

ଅନ୍ୟ ଏକ ବହି ମୋ ଆଡ଼କୁ ବଢ଼େଇ ଦେଲେ ରବିବାବୁ। ବହିଟିର ନାମ 'Life of Madhusudan Das – as seen by many eyes' ବହିଟିର ପ୍ରଥମ ପୃଷ୍ଠାରେ କୁମାରୀ ଶୈଳବାଳା ଦାସଙ୍କ ହାତ ଲେଖା – ରବିବାବୁଙ୍କ ଉଦ୍ଦେଶ୍ୟରେ ଉପହାର ଏଇ ବହିଟି ୧୯୬୨ ମସିହାରେ।

– ହଁ, ସେ ପୃଷ୍ଠାଟି ପଢ଼ିବା ପୂର୍ବରୁ ମୁଁ ଟିକେ କହିଦିଏ, ମଧୁବାବୁଙ୍କ ଶେଷ ଜୀବନରେ ଯେତେବେଳେ ସେ ଜାତି ପାଇଁ ନିଜକୁ ସର୍ବସ୍ୱାନ୍ତ କରି ସାରିଥିଲେ ଏବଂ ଦେବାଳିଆ ହେଇ ଯାଇଥିଲେ ସେତିକି ବେଳର ଏ ଘଟଣା ଯାହା ବାରିଷ୍ଟର ଚନ୍ଦ୍ରକୁମାର ହାଜରା ଲେଖିଛନ୍ତି। କୋର୍ଟ ନିର୍ଦ୍ଦେଶରେ ମଧୁବାବୁଙ୍କ ଘର ନିଲାମ ହେବାର ଦୁଇଦିନ ପୂର୍ବର ଘଟଣା। ସାର୍ ସୁରେନ୍ଦ୍ରନାଥ ବାନାର୍ଜୀ – ଯାହାଙ୍କ ସହ ମତାନ୍ତରରୁ ଉତ୍କଳ ସମ୍ମିଳନୀର ଜନ୍ମ ହୋଇଥିଲା ତାଙ୍କ ମୃତ୍ୟୁ ଖବର ପାଇ ମଧୁବାବୁ ଖୁବ୍ ଦୁଃଖୀ ହୋଇଥିଲେ ଏବଂ ଦୁଇଜଣ ବିଶିଷ୍ଟ ବ୍ୟକ୍ତିଙ୍କୁ ଡାକି କଟକ ଟାଉନ ହଲ୍‌ରେ ଏକ ଶୋକ ସଭା ଆୟୋଜନ ଲାଗି କହିଥିଲେ। ସଭା ଯଥାବିଧି ହେଲା ଏବଂ ମଧୁବାବୁ ପୌରୋହିତ୍ୟ କଲେ। ସଭା ଶେଷରେ ସୁରେନ୍ଦ୍ରନାଥ ବାନାର୍ଜୀଙ୍କର ପୁତ୍ରଙ୍କ ନିକଟକୁ ଶୋକ ପ୍ରସ୍ତାବ ପଠେଇବାର ସ୍ଥିରୀକୃତ ହେଲା। କିନ୍ତୁ ସଭାର ଆୟୋଜକମାନେ ଶୋକ ପ୍ରସ୍ତାବଟିକୁ ନିଜେ ନ ପଠେଇ, ପରଦିନ ସକାଳେ, ମଧୁବାବୁଙ୍କ ପାଖକୁ ପଠେଇ ଦେଲେ ସେ ମଧୁବାବୁ ସେ ପ୍ରସ୍ତାବକୁ ଟେଲିଗ୍ରାମ କରିବେ। ସେତେବେଳେ ମଧୁବାବୁ କପର୍ଦ୍ଦକ ଶୂନ୍ୟ। ପରଦିନ ତାଙ୍କୁ ନିଜ ପିନ୍ଧା ଲୁଗାଟି ସହ ସେ ଘର ଛାଡ଼ିଦେବାକୁ ଥାଏ। Mr. Hazra ସହି ପାରିଲେନି। ସେ କ'ଣ ଲେଖିଛନ୍ତି ସେଇଠୁ ପଢ଼ନ୍ତୁ –

– "I asked Mr. Das, could it be possible in Bengal? x x x Mr. Das kept silent for a while looking very grave. Then with a smile he said to me, 'Chandra, do not compare Orissa with Bengal. The public men of Bengal now are the fourth generation of their public men, but I am the first public man in my country, and I am still living."

ଏତିକି ପଢ଼ିସାରି ମୁଁ ଚୁପ୍ ହେଇଗଲି। ଓଡ଼ିଶାରେ ଆଉ କ'ଣ Public man ଜନ୍ମ ହେବେ ନାହିଁ? ଓଡ଼ିଶାରେ ସମସ୍ତେ କ'ଣ କେବଳ ନିଜର ସ୍ୱାର୍ଥ ପାଇଁ Public manର ମୁଖା ପିନ୍ଧିବେ? ବଡ଼ ଦେଉଳକୁ ଚାହିଁ ଜାତିର ପୁନରୁଦ୍ଧାର ପାଇଁ କ'ଣ କେହି ଆଉ ଶପଥ ନେବାକୁ ବି ସାହସ କରିବ ନାହିଁ? ମୁଁ ମନେ ମନେ ଭାବି ଚାଲିଥିଲି। ଅନ୍ୟ ସମସ୍ତେ ଚୁପ୍ ଥିଲେ। ହୁଏତ ସମସ୍ତେ ସେଇପରି କିଛି ଚିନ୍ତା କରୁଥିଲେ।

– ଗୋପାଳ କୃଷ୍ଣ ଗୋଖ୍‌ଲେ – ମହାତ୍ମାଗାନ୍ଧୀଙ୍କର ରାଜନୈତିକ ଗୁରୁ, ଯେଉଁ ବର୍ଷ C.I.E. ଉପାଧିରେ ସମ୍ମାନିତ ହୋଇଥିଲେ, ଠିକ୍ ସେଇବର୍ଷ ମଧୁବାବୁଙ୍କୁ ମଧ ସେଇ ଏକା ସମ୍ମାନ ମିଳିଥିଲା ୧୯୦୪ରେ।

ଶ୍ରୀମନ୍ତ ମିଶ୍ର ଏତେବେଳେକେ ମୁହଁ ଖୋଲିଲେ।

– ଆଉ ମହାତ୍ମାଗାନ୍ଧୀଙ୍କର ଥରେ ଭୁଲ ବୁଝାମଣା ହେଇଥିଲା ଯେ ମଧୁବାବୁ ଆଉ ଇହ ଜଗତରେ ନାହାନ୍ତି। ଏହା ନଭେମ୍ବର ୧୯୩୨ ମସିହାର କଥା। ପରେ ଯେତେବେଳେ ସେ ଜାଣି ପାରିଲେ ଯେ ଏହା ତାଙ୍କର ଏକ ବିରାଟ ଭୁଲ, ମହାତ୍ମାଗାନ୍ଧୀ ମଧୁବାବୁଙ୍କ ପାଖକୁ ଏକ ଟେଲିଗ୍ରାମ କରିଥିଲେ।

"Long live Madhusudan Das! Why I do not know, I had gathered the impression that you were no more. This is proof positive of my stupidity, but let it also be proof that God has still services to take from you for many a long your to come." ମଧୁବାବୁ କିନ୍ତୁ କଂଗ୍ରେସରେ ସେତେବେଳେ ନଥିଲେ। ତେଣୁ ମହାନ୍ ବ୍ୟକ୍ତିତ୍ୱମାନେ କେବେ ଅପୋଷରେ ଏକ ଅପରକୁ ଅବମାନନା କରନ୍ତିନି – ଯେପରି ଆମେ ଭକ୍ତମାନେ ମିଛକୁ ଏକ ଅପର ସହ କଳହ କରୁ ସେଇ ମହାପୁରୁଷମାନଙ୍କୁ ନେଇ।

ରବିବାବୁ ବହିଟି ମୋ ହାତରୁ ନେଇ ଚୁପ୍ କରି ବସି ରହିଲେ କିଛି ସମୟ। ତା'ପରେ ସେଇ ବହିରୁ ଏକ ଖବରକାଗଜ କଟିଂ କାଢ଼ିଲେ। ପ୍ରଜାତନ୍ତ୍ରର ୭-୧୦-୭୬ ଗୁରୁବାରର ସଂପାଦକୀୟ। ମଝିରେ ଗୋଟେ ଜାଗାରେ ଅଣ୍ଡରଲାଇନ୍ ହେଇଛି।

– ଦୟାକରି ଟିକେ ଏଇ ଅଣ୍ଡରଲାଇନ୍‌ତକ ପଢ଼ି ଦିଅନ୍ତୁ। ଶ୍ରୀହର୍ଷ ମିଶ୍ର ଯାଇହଉ ମୋଟେ ଭଲକଥା ଲେଖିଛନ୍ତି –

ମୁଁ ପୁଣି ପଢ଼ିଲି ପାଟିକରି – ଯେପରି ସମସ୍ତେ ଶୁଣିପାରିବେ।

"ଓଡ଼ିଶାରେ ଯଥାର୍ଥ ଐତିହାସିକ ମୂଲ୍ୟାୟନ ଅଭାବରୁ ଆମ୍ଭେମାନେ ଯାହାକୁ ଭଲପାଉ ତାଙ୍କୁ ଅତିମାନବ ଭାବେ ବର୍ଣ୍ଣନା କରିବାରେ ଅଭ୍ୟସ୍ତ। ଏଭଳି ଅନ୍ଧ ବିଶ୍ୱାସ ହିଁ ଯଥାର୍ଥ ପ୍ରାମାଣିକ ଇତିହାସ ରଚନାରେ ପ୍ରତିବନ୍ଧକ ସୃଷ୍ଟି କରେ।"

ଖବର କାଗଜ କଟିଂଟି ବଢ଼େଇ ଦେଇ ମୁଁ ଜଗନ୍ନାଥ ବଲ୍ଲଭର ଘଞ୍ଚ ବନାନୀକୁ ଲକ୍ଷ୍ୟ କରୁଥିଲି। ଅନ୍ଧାର ଜକେଇ ଆସୁଛି। ନରେନ୍ଦ୍ରର ପାଣି କଳା ଘୁମରିଆ ରଙ୍ଗ

ନେଲାଣି। ରବିବାବୁଙ୍କୁ ଓ ଶ୍ରୀମନ୍ତ ବାବୁଙ୍କୁ ନମସ୍କାର କରି ମୁଁ ଉଠିଲି। ସତ୍ୟବାବୁ, ହରିବାବୁ ଓ ଗୌରବାବୁ ତାଙ୍କ ଘରକୁ ବାହାରିଥିଲେ। ରିବବାବୁ ଓ ଶ୍ରୀମନ୍ତ ବାବୁ ଉଭୟେ ଦେଖିଲି ବେଶ୍ ବନ୍ଧୁପରି ଏଥର ମଞ୍ଚରୁ ଓହ୍ଲାଉଥିଲେ। ଶ୍ରୀମନ୍ତ ବାବୁ ରବିବାବୁଙ୍କୁ ସାବଧାନରେ ଗୋଡ଼ ପକେଇବାକୁ ଉପଦେଶ ଦେଇ ନିଜ କାନ୍ଧ ବଢ଼େଇ ଦେଉଥିଲେ ଭରା ହେବାକୁ। ରବିବାବୁ ମଞ୍ଚରୁ ଓହ୍ଲେଇବା ଆଗରୁ ଦୁଃଖଦଗଳାରେ କହିଚାଲିଥିଲେ – ପୂର୍ବତନ ପାଟଣା ହାଇକୋର୍ଟର ଚିଫ୍ ଜଷ୍ଟିସ୍ ସାର୍ ଲଟ୍ ଟେରେଲ୍‌ଙ୍କ ଭାଷାରେ ଓଡ଼ିଆ ଜାତିର ଚରିତ୍ର – "His (Madhu babu) life was an heroic conflict with the Oriya demons of sloth and stupidity, and the Oriya devils of jealousy and intrigue for the rescue of an Oriya nation."

ମୁଁ ପୁଣି ଏକା . . . ଏକା ଏକା ସେଇ ବଗିଚାର ଅଣଓସାରିଆ ରାସ୍ତାରେ ଚାଲିଲି। ଦୁଇ ପଟେ ଧାଡ଼ିବାନ୍ଧି ନଡ଼ିଆ ଓ ଗୁଆ ଗଛ। ଉତ୍କଳ ସମ୍ମିଳନୀ ଓ ମଧୁବାବୁଙ୍କ ସଂପର୍କ ଯେ ଏମିତି ସହ ଏତେ ଘନିଷ୍ଠ ତା' ଜାଣି ନଥିଲି। ଶୁଣିଥିଲି କେବଳ ରାୟରାମାନନ୍ଦ ପଟ୍ଟନାୟକଙ୍କ ସମ୍ବନ୍ଧରେ। ରାମାନନ୍ଦ ପଟ୍ଟନାୟକ – ବ୍ରହ୍ମଗିରି ପାଖ ବେଣ୍ଟପୁରର ସେଇ ପ୍ରସିଦ୍ଧ ତତ୍ତ୍ୱବିତ୍, କବି, ସାମନ୍ତ ଓ ଭକ୍ତ। କବି ହିସାବରେ ସେ ଓଡ଼ିଶା ଅପେକ୍ଷା ବଙ୍ଗଳାରେ ବେଶି ପରିଚିତ। ଐତିହାସିକମାନେ ଓଡ଼ିଶାର ଭାଗ୍ୟ ବିପର୍ଯ୍ୟୟ ପାଇଁ ମଧ୍ୟ ତାଙ୍କୁ ଦାୟୀ କରନ୍ତି।

କୌଣସି ଏକ କାବ୍ୟର ମୁଖବନ୍ଧ ଲେଖିବାକୁ ଯାଇ ଗୋକୁଳ ବିହାରୀ ମହାନ୍ତି ଲେଖିଥିଲେ – "ଜୀବକୁ ପରମର ଆକର୍ଷଣ ହିଁ ସତ୍ୟ; ତହିଁର କାରଣ ଯାହାହେଉ ତା' ନେଇ ତର୍କ ବୃଥା; ଯୋଗାଚାର ମାର୍ଗର ଅନ୍ୱେଷଣର ସହଜ ପନ୍ଥାରେ ଏ ପରମ ସତ୍ୟର ଉପଲବ୍ଧି ମିଳେ। ପରକୀୟା ପ୍ରୀତିର ଉପମା ଦେଇ, ବିଶେଷତଃ ଓଡ଼ିଆ ବୈଷ୍ଣବ ଗୋଷ୍ଠୀର ଚିନ୍ତା – ସ୍ୱାତନ୍ତ୍ର୍ୟପୁଷ୍ଟ ରାଗାନୁଗା ଭକ୍ତି ଚେତନାର ଏ ପରମ ଆକର୍ଷଣର ଅନୁଭୂତି ବର୍ଣ୍ଣନା କରି ଗୌଡ଼ୀୟ ଚିନ୍ତାନାୟକ ଚୈତନ୍ୟ ଦେବଙ୍କୁ ରାୟ ରାମାନନ୍ଦ ପଟ୍ଟନାୟକ ଶିକ୍ଷା ଦେଇଛନ୍ତି –

ପହିଲହି ରାଗ ନୟନ ଭଙ୍ଗ ଭେଲ।
ଅନୁଦିନ ବାଢ଼ଲ ଅବଧି ନ ଗେଲ॥
ନାସୋ ରମଣ, ନା ହାମ ରମଣୀ।
ଦୁହୁଁ ମନ ମନୋଭାବ ପେଶଲ ଜାନି॥
ଏ ସଖୀ! ସୋ ଅବ ପ୍ରେମ କାହିନୀ।
କାନୁଠାମେ କହିବି ବିଛୁରିଲ ଜାନି॥
ନା ଖୋଜଲୁଁ ଦୂତୀ ନା ଖୋଜଲୁଁ ଆନ।
ଦୁହୁଁ ନ ମିଳନେ ମଧ୍ୟତ ପାଞ୍ଚଜାଣ॥

ଅବସୋଇ ବିରାଗ ରୁହୁଁ ରେଲି ଦୂତୀ।
ସୁପୁରୁଷ ପ୍ରେମକ ଐଛନି ରୀତି॥
ବର୍ଦ୍ଧନ ରୁଦ୍ର ନରା ଧିପମାନ।
ରାମାନନ୍ଦ ରାୟ କବି ଭାଣ॥"

ଏଇ କେଇଟି ଧାଡ଼ି ମନେ ପଡ଼ିଗଲା ବେଳେ ଜାଣେନି କାହିଁକି ଓ କିପରି ମୋର ସବୁବେଳେ ମୈଥିଳୀ କବି ଚଣ୍ଡୀଦାସଙ୍କ ପ୍ରହେଳିକାମୟୀ ଅର୍ଦ୍ଧସ୍ଫୁଟ ଭାଷାରେ ସେଇ ସେ ବ୍ୟଞ୍ଜନାଟି ମନେ ପଡ଼ିଯାଏ . . .

ବାହିର ଦୁଆରେ କପାଟ ଲେଗେଛେ
ଭିତର ଦୁଆର ଖୋଲା
ନିସାଡ଼ ହଇୟା ଆୟଲେ ସଜନୀ
ଅନ୍ଧାର ଫେରିଲେ ଆଲା।
ଆଲାର ଭିତରେ କାଲାଟି ଆଛେ
ଚୋଉକୀ ରୟେଛେ ତଥା
ସେ ଦେଶର କଥା ଏ ଦେଶେ କହିଲେ
ଲାଗିବ ମରମେ ବ୍ୟଥା।
ପର ପତିସବେ ଶୟନେ ସ୍ୱପନେ
ସତେ କରିବି ଲେହା
ସିନାନ କରିକି ନୀର ନା ଛୁଇଁବି
ତବେତ ଭାବିନି ଦେହା।
କହେ ଚଣ୍ଡୀଦାସ ଏମିତି ହଇଲେ
ତବେତ ପୀରତି ସାଜେ
ନା ହଇବି ସତୀ ନ ହବି ଅସତୀ
ଥାକିବି ଧରଣୀ ମାଝେ।

ମୁଁ ଗୁଣୁଗୁଣୁ ହେଇ ଗାଇ ଚାଲିଥିଲି – ନିଜ ମନ ଖୁସିରେ। ନଡ଼ିଆ ପୁଆ ଗଛର ଫାଙ୍କରେ ସତେ ଯେପରି ତା'ର ଗୁଞ୍ଜରଣ ହେଇ ସେ ମୋ ପାଖକୁ ପୁଣି ଫେରି ଆସୁଥିଲା। ହଠାତ୍ ଏକ ଚିତ୍କାରରେ ମୋର ଧ୍ୟାନ ଭଙ୍ଗ ହେଲା। ବାଁ କରରୁ ଏକ ନାରୀ କଣ୍ଠର ଦୃଢ଼ ସ୍ୱର . . .

– ଆରେ ! ମୁଁ କହୁଛି ପରା ମତେ ଛୁଅଁନି। ଅଭଦ୍ର, ଅସଭ୍ୟ।

– ଦେଖ ଲୀନା ! ମୋ ସାଙ୍ଗରେ ଖେଳିଲେ . . .

ମୁଁ ଆଉ ଅପେକ୍ଷା କରି ପାରିଲିନି। ସେଇ ଦିଗକୁ ଛୁଟିଗଲି। ମୁହଁ ଅନ୍ଧାର ବେଳା। ଦୁଇଟି ଛାଇ ଗୋଟିଏ ଛୋଟ ପୋଖରୀର ପଥର ପାହାଚ ଉପରେ ଛିଡ଼ା ହେଇ ଭିଡ଼ାଭିଡ଼ି

ହେଉଛନ୍ତି । ମୋ ପାଦର ଶବ୍ଦରେ ବଡ଼ ଛାଇଟି ଛୋଟ ଛାଇକୁ ଛାଡ଼ିଦେଲା । ମୁଁ ନିକଟେଇ ଆସିବା ଆଗରୁ ବଡ଼ ଛାଇଟି ମୋ କରଦେଇ ପବନ ବେଗରେ ଦୌଡ଼ି ଚାଲିଗଲା । ତାକୁ ଧରିବାକୁ ଚେଷ୍ଟା କରି ବି ପାରିଲିନି । ଅନ୍ଧାର ଭିତରେ ସେ ହଜିଗଲା । ଫେରି ଆସିଲି ଝିଅଟି ପାଖକୁ । ଲୀନା ନାମ୍ନୀ ଝିଅଟି ସେତେବେଳକୁ ଦୁଇ ପାପୁଲିରେ ମୁହଁ ଚାପି ରଖିଥାଏ । ତା'ର ଯେ କୋହ ଉଠୁଥିଲା ସେକଥା ମୁଁ ସଂପୂର୍ଣ୍ଣ ଭାବେ ଅନୁଭବ କରୁଥିଲି । କିଛି ସମୟ ପର୍ଯ୍ୟନ୍ତ ମୁଁ ତାକୁ କିଛି କହି ପାରିଲିନି । ପୋଖରୀରେ ମାଛ ଲାଞ୍ଜ ପିଟୁଥିବାର ଶବ୍ଦ ଛଡ଼ା ଏବଂ ପୁଆ ନଡ଼ିଆ ଗଛଦେଇ ବହୁଥିବା ପବନର ଆହ୍ୱାନ ଛଡ଼ା ଚାରିଆଡ଼େ ନିସ୍ତବ୍ଧତା । ବଗିଚା ଆରପଟେ ସହର ଆଲୋକରେ ଆକାଶ ଟିକେ ଧୂସର ଦିଶୁଥିଲା । ମୁଁ ନୀରବତା ଭାଙ୍ଗିଲି . . .

– ମୋତେ ଆପଣ ଜାଣନ୍ତିନି । ମୁଁ ଜାଣେ କେବଳ ଏତିକି ଆପଣଙ୍କ ଡକା ନାଁ ଲୀନା । ଏତିକିକୁ ପାଥେୟ କରି ଜଣେ ଜଣକୁ ବିଶ୍ୱାସ କରେନି । ତଥାପି ମୁଁ ଆପଣଙ୍କୁ ରାସ୍ତାରେ ଛାଡ଼ିଦେଇ ପାରେ । ଏ ନିକାଞ୍ଚନ ଅବସ୍ଥାରୁ ଗହଳିରେ ଭୟ କ'ଣ ? ଉଠନ୍ତୁ –

ଝିଅଟି ଚୁପ୍‌ଚାପ୍ ଉଠି ମୋ ପଛେ ପଛେ ଚାଲିଲା ।

# ଛଅ

ରତିର ଆକୃତି କେତେ. . .
ପ୍ରୀତିର ଆକୃତି କେତେ. . .
ଦୂର ବିସ୍ତାର ?

ଜଗନ୍ନାଥ ବଲ୍ଲଭ ମଠ ବଗିଚାରୁ ସେଇ ଗୁଣ୍ଡାଟି କବଳରୁ ତାକୁ ବଞ୍ଚେଇ ଆଣିବା ପରଠାରୁ ତାକୁ ମୁଁ କେବଳ ତା' ନାଁଟି ହିଁ ପଚାରିଥିଲି। ସେ କହିଥିଲା 'ଲୀନା'। ତା' ପରଠୁ ତା' ମୋ ଭିତରେ କେବଳ ନୀରବତା। ଜାଙ୍ଗୁଲୁ ଜାଙ୍ଗୁଲୁ ଅନ୍ଧାରରେ ସେ ଓ ମୁଁ। କେହି କାହାକୁ ଭଲକରି ଦେଖିନୁ। କେହି କାହାକୁ ଚାହିଁବାକୁ ହୁଏତ ସାହାସ କରିପାରୁନୁ। ମୋର ସଂଭ୍ରମତା ଓ ତା'ର ବୋଧେ ଲାଜ। ନଡ଼ିଆ ଗୁଆ ଗଛରେ ପବନ ଖେଳୁଛି। କିଛି ପଚାରିବାକୁ ଇଛା କରି ମୁଁ ପଚାରି ପାରୁନି କାଳେ ଲୀନା ଭାବିବ – ମୁଁ ତା'ର ଏଇ ଅସମୟର ସୁଯୋଗ ନେଉଛି ! ତା' ବିଷୟରେ ଜାଣିବାବି ମୋର କ'ଣ ଦରକାର ? ତାକୁ ରାସ୍ତା ଦେଖେଇ ଦେଲେ – ତାକୁ ଆଲୋକରେ ଛାଡ଼ିଦେଲେ ମୋର କର୍ତ୍ତବ୍ୟ ସରିଯିବ।

ବଗିଚା ସରି ଆସୁଛି ବୋଧେ। ଆଲୁଅ ଦେଖାଗଲାଣି ମଠରେ। ଆଲୁଅ ସହ ଶବ୍ଦ କିଛି ଶୁଭୁଛି ହୁଏତ ସଭା ହେଉଛି ମଠ ଅଗଣାରେ। ଗହଳି ଥିବାର ମନେ ହୁଏ। ଅଶୋକ ଗଛଟିଏ କୁଞ୍ଜପରି ବେଢ଼େଇ ରହିଛି ଦୋଳବେଦୀକୁ। ଚାରିପଟେ ଛୋଟ ଛୋଟ ବଖରାର ଘରସବୁ – ଦୁଇମହଲା କୋଠା। ମଠରୁ ବାହାରକୁ ଯିବାର ଦୁଆର ଦିଗକୁ ଆଙ୍ଗୁଳି ଦେଖେଇ ମୁଁ ଲୀନାକୁ କହିଲି . . .

– ଏଇ ହେଲା ରାସ୍ତା ବଡ଼ଦାଣ୍ଡକୁ। ରିକ୍ସା ନେଇନେବେ।

– "କୁଆଡ଼େ ଯିବି କିଛି ପଚାରିଲେନି ତ ?" ଲୀନା ପ୍ରଥମ କରି ପଚାରୁଛି !

ଏ ପ୍ରଶ୍ନରେ ମୁଁ ବାଧ ହୋଇ ଲୀନାର ମୁହଁକୁ ଚାହିଁଲି। ଆଲୁଅରେ ଲୀନାର ମୁହଁ . . . ମୁଁ ଆଶା କରି ନଥିଲି ଲୀନା ଏତେଟା ସୁନ୍ଦରୀ ହୋଇଥିବ। ବେଶ୍ ଡଉଲ ଡାଉଲ ଚେହେରା ଭ୍ରୁରୁ ଦୁଇଟି ଟଣା ଟଣା। ଆଖି ଚିରା ପୋଟଳ ପରି। ରଙ୍ଗ ସଫା। ସଂଭ୍ରାନ୍ତ ବଂଶୀୟା କନ୍ୟା ନିଶ୍ଚୟ। ବୟସ ହୁଏତ କୋଡ଼ିଏ ବାଇଶ। ଆଚ୍ଛାଦନ ଶାଢ଼ି ସିଲ୍‌କର।

– ଆଗରୁ କହିଛି – ଖାଲି 'ଲୀନା' ବୋଲି ଆପଣଙ୍କୁ ଜାଣେ।

– କୌଣସି ପ୍ରକାର ଉତ୍ସୁକତା ନାହିଁ ମୋ ବିଷୟରେ ଜାଣିବାକୁ ?

– ଆପଣଙ୍କୁ ହୁଏତ ଭଲ ନ ଲାଗିପାରେ !

ଲୀନା ଅଶୋକ ଗଛର କୁଞ୍ଜତଳ ଦୋରେ ନଥିକରି ବସିଗଲା । ମୁଁ ସେଇପରି ଛିଡ଼ାହୋଇ ରହିଥାଏ । ପାଖର ସଭାରେ କିଏ ଜଣେ ଜଗନ୍ନାଥ ଦାସଙ୍କର ଭାଗବତ ବିଷୟରେ ବୋଧେ ଭାଷଣ ଦେଉଛନ୍ତି । ମୁହଁକୁ ତଳ କରି ହଠାତ୍ ଲୀନା ଭାବାବେଶରେ କହି ଉଠିଲା –

– ଆପଣ କହିଥିଲେ ମତେ ରାସ୍ତା ଦେଖେଇ ଦେବେ . . . କହିଥିଲେ ଅନ୍ଧାରରୁ ଆଲୋକକୁ ନେଇଯିବେ, କହିଥିଲେ . . . ନିକାଞ୍ଚନ ଅବସ୍ଥାରୁ ଗହଳିରେ ଭୟ କମ୍ । କାହିଁ କିଛି କିଛି ତ ଦେଖେଇଲେନି – ବୁଝେଇବାର କଷ୍ଟ ବି କଲେନି ? ବଡ଼ଦାଣ୍ଡ ହିଁ କ'ଣ ମୋର ରାସ୍ତା ? ବିଜୁଳି ଆଲୁଅ କ'ଣ ଆଲୋକ ? ଗହଳିରେ କ'ଣ ଅତ୍ୟାଚାର ହୁଏନି ?

– ଯିଏ ନିଜେ ରାସ୍ତା ଖୋଜୁଛି – ଯିଏ ନିଜେ ଅନ୍ଧାରରେ ଘାଣ୍ଟି ହେଉଛି ସେ କ'ଣ ଦେଖେଇବ ? ମୁଁ ଲୌକିକ ରାସ୍ତା, ବିଜୁଳି ଆଲୁଅ ଓ ଜନ ଗହଳି କଥା ହିଁ ଭାବି ଆପଣଙ୍କୁ କହିଥିଲି ।

– ସାଙ୍ଗ ହୋଇ ରାସ୍ତା ଖୋଜିଲେ ?

– ଆପଣ ତ ମତେ ଜାଣନ୍ତିନି । ମୋର ଏଠି କେହି ନାହିଁ ।

– ଜଣାଶୁଣା ଲୋକେ ବେଶି ଅତ୍ୟାଚାର କରନ୍ତି । କାହାର କିଏ ଅଛି ? ମୋର ମଧ୍ୟ ପୁରୀରେ କେହି ନାହିଁ – ମୁଁ ବି ଆଜି ଆସିଥିଲି । ଆଜି ଫେରିଯିବାର କଥା କିନ୍ତୁ କୋଉଠିକି ଫେରିବି ?

– କାହିଁକି – ଘରକୁ ?

– ଘର ! କାହାକୁ କହନ୍ତି ଘର ? ଇଟା, ସିମେଣ୍ଟ, ଛଡ଼ରେ ତିଆରି – ରଙ୍ଗକରା କାନ୍ଥର ସମାବେଶକୁ ? ନିୟମ କାନୁନରେ ବନ୍ଧା ଏକ ମନୁଷ୍ୟ ଗୋଷ୍ଠୀ ସହ ଚଳିବାକୁ ? ପ୍ରତ୍ୟେକ ଦିନର adjustmentକୁ ?

ଲୀନାର ବଡ଼ବଡ଼ ଆଖିରେ – ଲୁହର ବୁନ୍ଦି । ତାକୁ ଆଉ ପଚାରିବାକୁ ସାହସ ହେଉନି । ନିଶ୍ଚିତ ଭାବରେ ସେ ଦୁଃଖୀ । ଆଉ ତାକୁ କିଛି ନ ପଚାରି, ସାଙ୍ଗରେ ଟିକେ ଘୂରେଇ ଦେଲେ ବୋଧେ ତା'ର ମନ ଭଲ ହୋଇଯିବ ଭାବିବା ଛଡ଼ା ଅନ୍ୟ ରାସ୍ତାବି କିଛି ନାହିଁ । କିନ୍ତୁ ଝିଅ ପିଲାଟେ – ଏକା ଏକା ମୋ ସାଙ୍ଗରେ କୁଆଡ଼େ ଘୂରିବ ? ମୋର କିଛି ଆସ୍ଥାନ ନାହିଁ – କିଛି ଠିକ୍ ଠିକଣା ବି ନାହିଁ । ମୋ ନିଜ ଦୁଃଖର ଭାରାରେ ମୁଁ ଏତେ ଭାରାକ୍ରାନ୍ତ ! ସେଥିରେ ଆଉ ଏକ ବୋଝ ବୋହିବାର ଶକ୍ତି ନାହିଁ ? ମନ କିନ୍ତୁ ମାନୁନି । ତାକୁ ମୋଠୁ କିପରି ଛଡ଼େଇବି ?

ମାଇକ୍‌ରେ ଶବ୍ଦ – ଭାଷଣର । ବା ମକରର ଛୋଟ ଘରେ କେଇଜଣ ଭଜନ

ଗାଉଛନ୍ତି –

ଏହି ମନ ସିନା ଚତୁର୍ଦ୍ଧାମୂରତି, ରେ ମୂଢ଼ମତି !
ମନ କହେ ଚଇତନ ହେତୁରେ ଦେଖ ତୁ ବ୍ରହ୍ମ
ଏ ତତ୍ତ୍ୱ ଚାରି ବେଦେଣ ଦଣ୍ଡିବ ନାହିଁ ଶମନ
ସନକାଦି ମୁନି ଧ୍ୟାଉଛନ୍ତି ହେ ।
ନ ଖୋଳ ତଡ଼ାଗ କୂପ ଦେଉଳ ତୋଟା ନ ରୋପ
ସ୍ଥାପନା ଦିଅଁ ନ ସ୍ଥାପ ନ ଯା ବୃନ୍ଦାବନ ଗୋପ
ନ ଯା ତୁହି ପ୍ରୟାଗ ଗୋମତୀ ହେ ।
ଜଟା କୌପୀନ ନ ଧର ତିଳକ ମାଳା ନାକର
ଭସ୍ମ ଅଙ୍ଗ ପରିହର ଏ ଜ୍ଞାନ ହୃଦେ ନ ଧର
ଗଙ୍ଗାକୂଳେ ନାହିଁ ସଦ୍‌ଗତି ହେ !
ଆତ୍ମାକୁ ଆତ୍ମାରେ ଦେଖ ଦେଖିଲେ ପାଇବୁ ସୁଖ
ସକଳ ସଖ ଉପେଖ ଜ୍ଞାନ ଲଭିବୁ ପ୍ରତ୍ୟକ୍ଷ
ଭାବି କହେ ପାମର ଅଚ୍ୟୁତି ହେ !

ଚୁପ୍‌ଚାପ୍ ମୁଁ ଭଜନଟି ଶୁଣୁଥିଲି । ବାସ୍ତବିକ ଆତ୍ମାକୁ ଆତ୍ମାରେ ନ ଦେଖିଲେ ଭଗବାନଙ୍କୁ ପାଇବା ପାଇଁ ହଜାରେ ମନ୍ଦିର ତୋଳିଲେ କି ଲାଭ ?

– ଲୀନା ! ଉଠ । ସେଠି ଗୋଟେ କ'ଣ ସଭାହେଉଛି ଟିକେ ଦେଖିବା ।

– ମତେ ସଭା ଭଲ ଲାଗେନି । ଆଲୋଚନା ଦ୍ୱାରା ଜଣେ ଜଣକର ଜ୍ଞାନର ପରିସୀମା ବିଷୟରେ ହୁଏତ ଶ୍ରୋତାଙ୍କୁ ଏକ ଧାରଣା ଦିଏ – କିନ୍ତୁ ଶ୍ରୋତାମାନେ ସେଥିରୁ କିଛି ଲାଭ ପାଆନ୍ତିନି । ମୁଁ ନିଜେ ଉପଲବ୍ଧି ନକଲା ଯାଏଁ ସବୁକିଛି ମୋ ପାଇଁ ଏକ ନାଟକର ଦୃଶ୍ୟ – ବା ଉପନ୍ୟାସର ପୃଷ୍ଠା ।

– ତା' ହେଲେ ?

– ଏଇଠି ବସନ୍ତୁ ନା ! Please –

ବସିଲି – କିନ୍ତୁ ବିରକ୍ତ ହୋଇ । ଝିଅମାନଙ୍କର ସବୁବେଳେ ଏଇଟା ଏକ ଖରାପ ଅଭ୍ୟାସ । ନିଜର ବୋଲି କାହାକୁ ଭାବିଲେ – ତା' ଉପରେ ଅଧିକାର ସାବ୍ୟସ୍ତ କରିବାରେ ହିଁ ତାଙ୍କର ଆନନ୍ଦ । କେବଳ ତା'ର ମାନସିକ ଅଶାନ୍ତିକୁ ହୃଦୟଙ୍ଗମ କରି ମାନିନେଲି । ଶୀତ ପଡ଼ିଲାଣି । ପବନ ଖୁବ୍ ଯୋର୍‌ରେ ବୋହୁଛି । ନୀରବତା ଭାଙ୍ଗିବାକୁ ମୁଁ ଆରମ୍ଭ କଲି ।

– ଏଇ ମଠ କାହାର ଜାଣନ୍ତି ?

– ନାଁ ! ଜାଣିବାର ଆବଶ୍ୟକତା ବି ନାହିଁ । ଜଣେ ମତେ ଜନ୍ମ ଦେଇଛି – ଆଉ ଜଣେ ମୋର ଜୀବନକୁ ନିୟନ୍ତ୍ରିତ କରୁଛି – ଆଉ ଜଣଙ୍କ ଇଚ୍ଛାରେ ମୁଁ ଏ ଦୁନିଆ

ଛାଡ଼ିବି। ମୋର ଜାଣିବାର ଦରକାର କ'ଣ?

କ'ଣ କହି ଏ ଝିଅଟାକୁ ବୁଝେଇବି? ମତେ ଆଉ କିଛି ରାସ୍ତା ଦେଖା ଯାଉ ନଥିଲା। ସେଇଠି ମୁଁ ସ୍ଥାଣୁପରି କିଛି ସମୟ ବସି ରହିବାଟା ହିଁ ଉଚିତ୍ ମନେ କଲି। ଉଭୟଙ୍କ ନୀରବତା ମଧ୍ୟରେ ମାଇକ୍‌ରୁ ବୋହି ଆସୁଥିଲା ଏକ ବଜ୍ରଗମ୍ଭୀର ସ୍ୱର –

"ଜଗନ୍ନାଥ ଦାସ ଓଡ଼ିଆରେ ଭାଗବତ ରଚନା କରିଥିଲେ – ସଂସ୍କୃତ ଭାଗବତକୁ ଅନୁବାଦ କରି ନଥିଲେ। ସଂସ୍କୃତ ତାଙ୍କୁ ଅଜଣା ନଥିଲା – ତାଙ୍କ ପିତା ଥିଲେ ଜଣେ ପୁରାଣ ପଣ୍ଡା। ତା'ହେଲେ ସେ ସ୍ୱାଧୀନ ଭାବରେ ରଚନା କଲେ କାହିଁକି?

ଜଣେ ପ୍ରସିଦ୍ଧ ପଣ୍ଡିତଙ୍କ ମତରେ ଏଥିପାଇଁ ପୁରୀ କୃଷ୍ଟି ଅନେକାଂଶରେ ଦାୟୀ। ପୁରୀର ପାରମ୍ପରିକ କୃଷ୍ଣ ସଂପ୍ରଦାୟର କୃଷ୍ଟି ସହିତ ସଂସ୍କୃତ ଭାଗବତର କୃଷ୍ଣତତ୍ତ୍ୱରେ ପାର୍ଥକ୍ୟ ଥିଲା।

ଓଡ଼ିଶାରେ ପ୍ରବାଦ ଅଛି – ଅସମୟରେ ଶ୍ରୀକୃଷ୍ଣ ଗଧପାଦ ଧରିଥିଲେ ଓ ବିଦୁର ଘରେ ଶାକାନ୍ନଖାଇ ତୃପ୍ତିଲାଭ କରିଥିଲେ। ସଂସ୍କୃତ ମହାଭାରତ ଅନୁସାରେ ଗଧ ବଳିର ପ୍ରତୀକ ଅଟେ। ଶାକାନ୍ନକୁ ଶାକଦ୍ୱୀପୀ ବ୍ରାହ୍ମଣ ରୂପରେ ଗ୍ରହଣ କରିବାକୁ ହେବ। ଦୀର୍ଘତମାଙ୍କଠାରୁ କୃଷ୍ଣମତ ପ୍ରଚାରିତ ହେଲା। ଦୀର୍ଘତମା ପ୍ରେମବାଦ ପ୍ରଚାର କରିବା ଉତ୍ତାରେ ବାଳେୟ ଧର୍ମର ଉତ୍ପତ୍ତି ଘଟିଲା। ଏହି ବାଳେୟ ଧର୍ମ ଗୋପାଳକୃଷ୍ଣ ଧର୍ମ ବା ବାମନ ଅବତାର ନାମରେ ପରିଚିତ ହୋଇଅଛି। ଦୀର୍ଘତମାଙ୍କ ଅନ୍ଧକାରବାଦ 'ଗୋତମ' ବା ଶ୍ରେଷ୍ଠଜ୍ଞାନ ଅଟେ। ଜଗନ୍ନାଥ ସେହି ଗୋତମ ଓ ପ୍ରଥମବୁଦ୍ଧ ଅଟନ୍ତି। ଶାକାନ୍ନ ଅର୍ଥାତ୍ ଉଦ୍ଭିଦ ଜଗତରୁ ଖାଦ୍ୟରସ ଖାଇ ଶକ୍ତି ସଂଚୟ କରିବା ଉଚିତ୍ ବୋଲି ପ୍ରଚାରିତ ହେବା ଉତ୍ତାରୁ ଗୌତମ ଶାକ୍ୟସିଂହ ହେଲେ। ପଦାର୍ଥ କ୍ଷଣିକ ବୋଲି ବୁଦ୍ଧଦେବ କହି ଅଛନ୍ତି – ମିଥ୍ୟା ବା ଶୂନ୍ୟ ବୋଲି କହି ନାହାନ୍ତି। ପରବର୍ତ୍ତୀ ବୌଦ୍ଧମାନେ ପଦାର୍ଥ ଓ ଜ୍ଞାନକୁ ମିଥ୍ୟା ବା ଶୂନ୍ୟବୋଲି କହିଲେ।

ସୃଷ୍ଟିର ଯାବତୀୟ ପଦାର୍ଥ ମିଥ୍ୟା ବୋଲି ଜଗନ୍ନାଥ ଧର୍ମ ପ୍ରଚାର କରେନାହିଁ। ଜଗନ୍ନାଥ ମୂର୍ତ୍ତୀ ଭିତରେ ଜୀବନ୍ତ ଶାଳଗ୍ରାମ ଅଛିବୋଲି ପ୍ରବାଦ ଅଛି। ଏହି ଶାଳଗ୍ରାମ ହେଉ ବା କୌଣସି ଧର୍ମ ପ୍ରତିଷ୍ଠାତାଙ୍କ ଚୈତ୍ୟଶିଳା ହେଉ, ଶରୀରରେ ଆତ୍ମାସ୍ୱରୂପ ଏହା ବିଦ୍ୟମାନ ଅଟେ। ଆତ୍ମା ନିତ୍ୟ ଓ ଜ୍ଞାନମୟ। ଶରୀର ଅନିତ୍ୟ। ଏଥିପାଇଁ ଜଗନ୍ନାଥଙ୍କର ନବକଳେବର ହୁଏ। ଶରୀର ଅନିତ୍ୟ ହେଲେ ମଧ୍ୟ ସଂଯତେନ୍ଦ୍ରିୟ ହୋଇ କର୍ମକରି ବିଷୟ ଭୋଗକଲେ ମନୁଷ୍ୟ ପୁରୁଷୋତ୍ତମ ହେବ। ଇନ୍ଦ୍ରିୟ ସଂଯମପାଇଁ ଜ୍ଞାନେନ୍ଦ୍ରିୟ ଓ କର୍ମେନ୍ଦ୍ରିୟ ଗୁଣକୁ ମୂର୍ତ୍ତୀରେ ପ୍ରକଟିତ କରାଯାଇ ନାହିଁ।

ଜୈନମାନଙ୍କର ଆତ୍ମାର କୈବଲ୍ୟବାଦ ବଦଳରେ ଶରୀରର କୈବଲ୍ୟବାଦ ପ୍ରତିଷ୍ଠିତ ହୋଇ ପ୍ରାଚୀନ ମୂର୍ତ୍ତୀଗୁଡ଼ିକୁ ନବକଳେବର ପରେ ମୃତ୍ତିକାରେ ଲୀନ କରାଯାଏ। ଏସବୁ ଆଲୋଚନା କଲେ ଜଣାଯାଏ ଯେ ଜଗନ୍ନାଥ ଧର୍ମ ଭୋଗର ଧର୍ମ ଅଟେ। ମନୁଷ୍ୟର

ଶରୀର ଛଡ଼ା ବାହାରେ ପୃଥକ ଈଶ୍ୱରଙ୍କ ଅସ୍ତିତ୍ୱ ତହିଁରେ ସ୍ୱୀକାର କରାଯାଇ ନାହିଁ। ତେଣୁ ଓଡ଼ିଶାର ପଞ୍ଚସଖା ଯୋଗାଚାର ଦ୍ୱାରା ଆତ୍ମ ଉପଲବ୍ଧି କରି ଅନ୍ୟଙ୍କୁ, ଆତ୍ମା ଚିହ୍ନିବା ଲାଗି ଉପଦେଶ ଦେଇଥିଲେ। ଜଗନ୍ନାଥ ଦାସ ନିଜେ ବ୍ରାହ୍ମଣ ଥିଲେ – କିନ୍ତୁ ବ୍ରହ୍ମ ଯେ ନଜାଣେ ସେ ଖାଲି ପଇତା ପକେଇଲେ ବ୍ରାହ୍ମଣ ହୋଇଯିବ ବୋଲି ଭାବିବାକୁ ଆକ୍ରମଣ କରି ପ୍ରଶ୍ନ କରିଥିଲେ –

ଏକାକ୍ଷର ବ୍ରହ୍ମ ପୁଣ          ଜାଣଇ ଯେ ସୁ ବ୍ରାହ୍ମଣ
ନ ଜାଣିଲେ କେବେହିଁ ବ୍ରାହ୍ମଣ ନୋହିଛି
ଅଣ୍ଡବସ୍ତୁ ଏକ କରି          ପ୍ରଣବ ଶରୀରେ ଭରି
ଦାରୁବ୍ରହ୍ମ ପଞ୍ଚାତ୍ମିକ ନାମ ବହିଛ
ଚତୁର୍ଦ୍ଦଶ ଅଣ୍ଡେ ରହିଲା
ଅପରେ ପଞ୍ଚମ ବିନ୍ଦୁ କେହୁ ହୋଇଲା।
କାମବୀଜ କାହୁଁ ହୋଇ          ପଞ୍ଚାତ୍ମିକ ନାମ ବହି
ତ୍ରୟତତ୍ତ୍ୱ କେମନ୍ତ ପ୍ରକାର ହୋଇଛି
ଆଉ ଦେହ କେ କେ ତହିଁ          କେମନ୍ତେ ଅଛନ୍ତି ରହି
ଏ କଥା ତ ମନକୁ ଗହନ ଲାଗୁଛି
କହ ଭେଦ କାମ ବୀଜର
ଲଭଇଁ ପରମ ଗତି ସୁଖ ସାଗର।
ରତିର ଆକୃତି କେତେ          ପ୍ରୀତିର ଆକୃତି କେତେ
ଶ୍ରୁତିର ଆକୃତି କେତେ ଦୂର ବିସ୍ତାର
କେ କାହାକୁ କେତେ ଛଡ଼ା          କେ କାହାକୁ କରେ ଲୋଡ଼ା
କେମନ୍ତ ପ୍ରକାରେ ଏ ହୋଇଛି ବିସ୍ତାର
କେହୁ ଭଜି ଲଭେ କାହାକୁ
ଫେଡ଼ାଇ ମିଶାଇ ଦେଲେ ଆସୁ ମନକୁ।

ଜଗନ୍ନାଥ ଦାସଙ୍କର ଏ ସମସ୍ତ ପ୍ରଶ୍ନ କେବଳ ଯୋଗଚାରୀ ହିଁ ବୁଝିବେ। ଜଗନ୍ନାଥ ଦାସ କୋଉଠି ବି ନିଜକୁ – 'ବିଶ୍ୱାସେ ମିଳଇ ହରି ତର୍କେ ବହୁଦୂର'ର ଘୋଡଣୀରେ ଘୋଡ଼େଇ ନାହାନ୍ତି। ଆତ୍ମାକୁ ଉପଲବ୍ଧି କରିବା ଦ୍ୱାରା ହିଁ ମନୁଷ୍ୟ ପରମାତ୍ମାର ସନ୍ଧାନ ପାଏ। ଏଥିପାଇଁ ମନୁଷ୍ୟକୁ ସାଧନା କରିବାକୁ ପଡ଼େ। ସାଧନା ଶରୀର ବିନା ସମ୍ଭବ ନୁହେଁ। ପୁରୀର ଦୈତାମାନେ ପ୍ରଥମେ ଜୈନଥିଲେ ଓ କେବଳ ହେବାପାଇଁ କାୟାକ୍ଲେଶ ସହୁଥିଲେ। ସେମାନଙ୍କ ପାଇଁ ପୁରୀରେ ରାମଧର୍ମ ପ୍ରଚାରି ହୋଇଥିଲା। ଏଣୁ ବଳରାମ ଦାସ ଓ ଜଗନ୍ନାଥ ଦାସଙ୍କ ରଚନାରେ ରାମ କୃଷ୍ଣ – ଧର୍ମ ଦେଖାଯାଏ। ଜଗନ୍ନାଥ ଦାସଙ୍କ

'କୃଷ୍ଣ' – ଗୌଡ଼ୀୟ ବୈଷ୍ଣବଙ୍କର କୃଷ୍ଣ ନୁହଁନ୍ତି। ତାଙ୍କ ମତରେ –

ଯନ୍ତ୍ରରେ ପଞ୍ଚାଙ୍ଗ ହେବ ମନ୍ତ୍ରେ ପଞ୍ଚତତ୍ତ୍ୱ ଥିବ
ତନ୍ତ୍ରରେ କହିବ ପଞ୍ଚତତ୍ତ୍ୱ ମିଶାଇ
ପଞ୍ଚତତ୍ତ୍ୱ ଯେ ଜାଣିବ ତାକୁ ବୋଲି ସୁ ବୈଷ୍ଣବ
ମୋତେ ଜ୍ଞାନ ଆଜ୍ଞା ହେବ ସୁଜ୍ଞାନ ଯେହି।

"ବ୍ରହ୍ମପୁରାଣ ଅନୁସାରେ ପୁରୀରେ ବାଳଖିଲ୍ୟ ଋଷିମାନେ ବାସ କରୁଥିଲେ ଓ ସଂସ୍କୃତ ମହାଭାରତ ଅନୁସାରେ ବାଳଖିଲ୍ୟ ଋଷିମାନେ ବୃକ୍ଷର ଶାଖାରେ ପାଦରଖି ନତଶିର ହୋଇ ସୂର୍ଯ୍ୟଙ୍କ ମରୀଚି ପାତ୍ର ପାନ କରୁଥିଲେ। ଋଗ୍‌ବେଦରେ ବାଳଖିଲ୍ୟ ସୂକ୍ତ ଅଛି। ଏହି ସୂକ୍ତର ଋଷିମାନେ ଉଲଟ ଅଶ୍ୱତ୍‌ଥ ବୃକ୍ଷ ବା ଅତ୍ରିଙ୍କ ଔରସରୁ ଜାତ ଉତ୍ତାନପାଦ ଅଟନ୍ତି। ଏମାନେ ଶୂନ୍ୟରୁ ସୃଷ୍ଟିର ଆରମ୍ଭ ସ୍ୱୀକାର କରି ପୃଥିବୀରେ ଜ୍ଞାନର ଅସ୍ତିତ୍ୱ ସ୍ୱୀକାର କରୁଥିଲେ। ସେମାନେ 'ଗଣ୍ଡଶିଳ ସାଧନ' କରୁଥିବାରୁ ପୁରୀରେ ଗୁଣ୍ଡିଚାଯାତ୍ରା ହୁଏ। ସଂସ୍କୃତ ମହାଭାରତରେ କୃଷ୍ଣଙ୍କ ବର୍ଣ୍ଣନା ସହ ରାଧାଙ୍କର କିଛି ସଂପର୍କ ନାହିଁ। ଭଗବତ୍ ଗୀତାରେ ମଧ୍ୟ ରାଧାଙ୍କର ଚିହ୍ନବର୍ଣ୍ଣ ନାହିଁ। କିନ୍ତୁ ସଂସ୍କୃତ ଭାଗବତର ଦଶମ ସ୍କନ୍ଧରେ ଯେଉଁ ରାସଲୀଳା ବର୍ଣ୍ଣନା କରାଯାଇ ନୈତିକ ଦୃଷ୍ଟିରୁ ତହିଁର କୁଫଳକୁ ଘୋଡ଼େଇବା ପାଇଁ ପ୍ରୟାସ କରାଯାଇଛି – ତାହା ସମାନପକ୍ଷରେ ଇଷ୍ଟକର କି? କୃଷ୍ଣଙ୍କ ସହିତ ଗୋପୀଙ୍କର ସୁରତ ପ୍ରସଙ୍ଗ ଉନ୍ମୁକ୍ତ ଭାଷାରେ ବର୍ଣ୍ଣନା କରିବା ଉତ୍ତାରୁ କୃଷ୍ଣ ଅଚ୍ୟୁତ ହୋଇଥିବାରୁ ବିନ୍ଦୁଚ୍ୟୁତ ହେଲାନାହିଁ କହିବାଦ୍ୱାରା ସମାଜର ଆଦର୍ଶ କ୍ଷୁଣ୍ଣ ହେବନାହିଁ ବୋଲି ଭାବିବା ସମୀଚୀନ ନୁହେଁ। ଦୀର୍ଘତମାଙ୍କ ମତ ଅନୁସାରେ ଅନ୍ଧକାରରୁ ସୃଷ୍ଟିର ଉତ୍ପତ୍ତି ବୋଲି ସ୍ୱୀକାର କରି ପୁରୀରେ ସଂଯତ କୃଷ୍ଣଧର୍ମ, କୃଷ୍ଣମୁଖା ହନୁମାନ ହୋଇଥିଲା। ଏମାନେ ରାମଧର୍ମ ଗ୍ରହଣ କରିଥିଲେ; ଅର୍ଥାତ୍ ଆନନ୍ଦମୟ ଜୀବନ ଅତିବାହିତ କରୁଥିଲେ। ଏଣୁ ଏ ଦେଶର ନାମ ତୋଷଳୀ ହୋଇଥିଲା। ଓଡ଼ିଶାର ପାରମ୍ପରିକ ସଂସ୍କୃତି ଅନୁସାରେ ଜଗନ୍ନାଥ ଦାସ କୃଷ୍ଣ ଚରିତକୁ ଭାଗବତରେ ରୂପରେଖ ଦେଇଥିଲେ।

ସଂସ୍କୃତ ଭାଗବତ ସହ ସାଦୃଶ୍ୟ ନଥିବାରୁ ବ୍ରାହ୍ମଣମାନେ ଏହାକୁ ଉପହାସ କରି 'ତେଲି ଭାଗବତ' ଆଖ୍ୟା ଦେଇଥିଲେ ସିନା – ଏହା ସାଧାରଣଙ୍କ ସଂସ୍କୃତି ସହ ସଂଶ୍ଲିଷ୍ଟ ଥିବାରୁ ଗ୍ରାମେ ଗ୍ରାମେ ଭାଗବତ ଟୁଙ୍ଗୀର ସୃଷ୍ଟି ହୋଇଗଲା। ତାଙ୍କ ଏକାଦଶ ସ୍କନ୍ଧରୁ ସେ 'ଅବଧୂତବାଦୀ' ଥିଲେ ବୋଲି ଜଣାଯାଏ। ଦିବାକର ଦାସଙ୍କ 'ଜଗନ୍ନାଥାମୃତ'ରେ ବର୍ଣ୍ଣନା ଅଛି –

ତେଣୁ ସେ ପଦାର ଉଦରେ । ଜନ୍ମିଲେ 'ବାଳକ-ବେଭାରେ' ॥
ଭାଦ୍ରବ ଶୁକ୍ଳାଷ୍ଟମୀ ଦିନ । ବେଳ ମଧ୍ୟାହ୍ନ କାଳେ ଜନ୍ମ ॥

'ବାଳକ ବେଭାରେ' ସେ ଜନ୍ମିଥିବାର ଉକ୍ତ ହୋଇଥିବାରୁ ପ୍ରାଚୀନକାଳର ବାଳେୟ ଧର୍ମ ବା 'ଅନାସକ୍ତ କିଶୋର ମାର୍ଗ'ର ସେ ପଥିକ ଥିଲେ ବୋଲି ଅନୁମାନ କରାଯାଇ ପାରେ।

'ତୁଳାଭିଣା'ରେ ସେ ଏକାକ୍ଷର ବ୍ରହ୍ମକୁ ବୁଝେଇବାକୁ ଯାଇ ଲେଖିଲେ –

"ମହାଶୂନ୍ୟ ଯେ ଜ୍ୟୋତି ରୂପ । ଜ୍ୟୋତିରୁ ଜାତ ଠୁଳରୂପ ॥
ଠୁଳରୁ ଅର୍ଦ୍ଧମାତ୍ରା କଳା । ମାତ୍ରାରୁ ଓଁକାର ଜନ୍ମିଲା ॥
ଓଁକାରୁ ବ୍ରହ୍ମ ଏ ଜଗତ । ଶୁଣ ପାର୍ବତୀ ଦେଇ ଚିତ୍ତ ॥
× × ×
ଅଣାକାର ଯେ ଜ୍ୟୋତି ରୂପ । ସେଠାରେ ନାହିଁ ରୂପ ରେଖ ॥
ଧୂମ୍ର ବର୍ଣ୍ଣର ପ୍ରାୟ ଦିଶେ । ଅନ୍ଧକାରଟି ସେ ପ୍ରକାଶେ ॥
× × ×
ସେଠାରୁ ଓଁକାର ଜନ୍ମିଲା । ଓଁ କାରୁ ଶକାର ଯେ ହେଲା ॥
ଶ କାରୁ ହୋଇଲା ମ କାର । ମ କାରୁ ଜନ୍ମିଲା ରା କାର ॥
ଅନ୍ଧକାରଟି ଗୁପ୍ତ ହେଲା । ଓଁ କାରୁ ବ୍ରହ୍ମ ପ୍ରକାଶିଲା ॥

"ଜ୍ୟୋତିର ଅର୍ଥ କିରଣ – ଆଲୋକ ନୁହେଁ। ଶୁକ୍ଳ ଓ କୃଷ୍ଣ ପଦାର୍ଥର କିରଣ ଅଛି। କିରଣୁ ଠୁଳ (ସଂସ୍ଥୁଳ) ବା ଭୂତ ପଦାର୍ଥ ଜାତ ହେଲା। ତତ୍ପରେ ଅର୍ଦ୍ଧମାତ୍ରା ବା ଅର୍ଦ୍ଧଚନ୍ଦ୍ର ଜାତ ହେଲା। ଏହା ପ୍ରଜନନ ସଙ୍ଗମ କାମନାର ପ୍ରତୀକ ଅଟେ। ଏହି ଓଁ କାର ନାଦ ବା ଧ୍ୱନି ଅଟେ। ଏଥିରୁ ଶ କାର ବା ଶକ୍ତି ଜାତ ହୁଏ। ଶକ୍ତିରୁ ମ କାର ବା ମୈଥୁନ ଜାତ ହୁଏ। ବିନ୍ଦୁ ତଳେ ଯେଉଁ ଓଁ କାର – ତାହା ତ୍ରିଗୁଣାତ୍ମକ। ଏହି ଓଁ କାରରୁ କ୍ଳୀୟ ବା ସତ୍ତ୍ୱଗୁଣ ବିଶିଷ୍ଟ ବିରାଟ କୃଷ୍ଣ ଜାତ ହୁଅନ୍ତି। ତହିଁରୁ ଶ୍ଳୀୟ ବା ରଜୋଗୁଣ ବିଶିଷ୍ଟ ସୁରାଟ ରାମ(ଚିତ୍ତ) ଜାତ ହୁଏ। ଏଥିରୁ ତମୋଗୁଣ ବିଶିଷ୍ଟ ମୁଁ ରାଟ (ଅହଂକାର) ହ୍ଳୀୟ ବା ହରି ଜାତ ହୁଅନ୍ତି। ଯେଉଁ ଠୁଳ ବା ଭୂତ ପଦାର୍ଥ କଥା କୁହାଗଲା ତାହା ବିନ୍ଦୁ ଅଟେ। ବିନ୍ଦୁ ଦୁଇଭାଗ ହୋଇ ଅର୍ଦ୍ଧମାତ୍ରା ହେଲା। ଦୁଇ ପଦାର୍ଥର ସଂଘର୍ଷରେ ଧ୍ୱନି ଜାତହୁଏ। ବିନ୍ଦୁ ଦୁଇଭାଗରେ ବିଭକ୍ତ ହେବାରୁ ଓଁକାର ବା ବିଭିନ୍ନ ଧ୍ୱନି ଜାତ ହେଲା। ବିନ୍ଦୁ ତଳେ ଅର୍ଦ୍ଧମାତ୍ରା ଓ ତହିଁତଳେ ଥିବା ଓଁକାର ସମସ୍ତ ସ୍ୱରର ପ୍ରତୀକ ଅଟେ। ସ୍ୱର ଧ୍ୱନି ଆଗେ ଜାତ ହୋଇଅଛି। ସେ ଓଁକାର କ୍ଳୀ ବା କୃଷ୍ଣ ଅଟେ। ତହିଁରୁ ଶ୍ଳୀ ବା ଶ୍ରୀ ଅର୍ଥାତ୍ ଜ୍ଞାନ ଜାତ ହୋଇ ଏହି ଜ୍ଞାନରୁ ହ୍ଳୀ ବା ହ୍ରୀଂ ଅର୍ଥାତ୍ ପ୍ରଜନନ ସଙ୍ଗମ ଘଟିଲା। ଏହି କ୍ଳୀ ବା ବିରାଟ, ଶ୍ଳୀ ବା ସୁରାଟ ଓ ହ୍ଳୀ ବା ମୁଁରାଟ – 'ବିରାଟ ସଂସ୍କୃତ ଗୀତା'ରେ ଅଛି।"

ଅଧିକାଂଶ ତନ୍ତ୍ରମତରେ ପ୍ରଥମେ ନାଦ ଓ ପରେ ବିନ୍ଦୁ ଜାତ ହୋଇଅଛି। ଯଥା 'ସାରଦା ତିଳକ' –

ସଚ୍ଚିଦାନନ୍ଦ ବିଭାବାତ୍ ସକଳାତ୍ ପରମେଶ୍ୱରାତ୍
ଅସୀଚ୍ଛଂକ୍ତିସ୍ତତୋ ନାଦଃ ନାଦାତ୍ ବିନ୍ଦୁ ସମୁଭବଃ।

କିନ୍ତୁ ଓଡ଼ିଶାର ଜଗନ୍ନାଥ ଧର୍ମ ଅନୁସାରେ ଆଗେ ବିନ୍ଦୁ ଓ ପରେ ନାଦର ଉତ୍ପତ୍ତି

ଘଟି ଅଛି। ପ୍ରଥମେ ନାଦର ଉତ୍ପତ୍ତି ସ୍ୱୀକାର କଲେ ସ୍ଥୂଳ ପଦାର୍ଥର ଅସ୍ତିତ୍ୱ ସ୍ୱୀକୃତ ହୋଇ ପାରିବ ନାହିଁ। ତେଣୁ ଜଗନ୍ନାଥ ଦାସ କେବଳ ଯେ ଓଡ଼ିଆ ସଂସ୍କୃତିର ଶୂନ୍ୟ ସାଧନା ଓ ଜଗନ୍ନାଥ ଧର୍ମ ମାଧ୍ୟମରେ କୃଷ୍ଣ ଚେତନାକୁ ବୁଝିଥିଲେ ଏଥିରେ ସନ୍ଦେହ ନାହିଁ। ଜଗନ୍ନାଥ ଦାସ କୌଣସି ପ୍ରକାରେ ଚୈତନ୍ୟଙ୍କ ଦ୍ୱାରା ପ୍ରଭାବିତ ହୋଇ ନଥିଲେ, ଶିଷ୍ୟ ହେବାତ ବହୁ ଦୂରର କଥା। ତାଙ୍କ ରଚିତ ଭାଗବତର ପ୍ରଥମ ସ୍କନ୍ଦରେ ସେ ଲେଖନ୍ତି –

ଅଖିଳ ବେଦର ସାଗର
ଯେ ଅନୁଭବ ଆପଣାର।

ନିଜର ଅନୁଭବ ବିନା ସବୁକିଛି ମିଥ୍ୟା – ବେଦ ମଧ୍ୟ। ତେଣୁ ବେଦବି ବୁଝିବାକୁ ହେଲେ ପ୍ରଥମେ ନିଜକୁ ବୁଝିବା ଉଚିତ୍। ପୁଣି ସେ ଲେଖନ୍ତି –

ଯେ ଧର୍ମ ସଂସାର ରଖିବ
ସେ କାହିଁ ଶରଣ ପଶିବ?

ଯାହା ଜଣେ ନିଜ ଅନୁଭୂତିରୁ ଲାଭ କରିଛି ସେ କଥା କହିବା ପାଇଁ – ବା ସେ କଥାକୁ ସାହାରା ଦେବା ପାଇଁ ସେ କି କାହାର ଶରଣ ପଶିପାରେ? ନିଜ ଚିନ୍ତା, ଚେତନା ଯେତେବେଳେ ଅନୁଭୂତି ପ୍ରସୂତ ହେବ ଏବଂ ତାକୁ ଯେତେବେଳେ ସେ ବିନା ଭୟରେ ଉଚ୍ଚାରଣ କରିବ – କପଟ ବିହୀନ ଭାବରେ – ତାକୁ ହିଁ ଶାସ୍ତ୍ର, ସାହିତ୍ୟ ବା ଜ୍ଞାନ ବୋଲି କୁହାଯାଇପାରେ। ସେ ଲେଖନ୍ତି –

କପଟ ଧର୍ମ ଯହିଁ ନାହିଁ
ସ୍ୱଭାବେ ଶାସ୍ତ୍ର ସେ ବୋଲାଇ।

ଏହି ଭାବରେ ଯେ ଜ୍ଞାନ, ବା ଶାସ୍ତ୍ର ରଚନା କରେ ସେ କେବେ ଫଳର ଆଶା କରେନି। ସାହିତ୍ୟିକ ବା ଧର୍ମର ଧ୍ୱଜାଧାରୀ ଯଦି ଫଳର ଆଶାରେ ପରିଚାଳିତ ହୁଏ – ସେ ହୁଏତ ପୁରସ୍କାର ପ୍ରାପ୍ତି କରେ – କିନ୍ତୁ ତା ସୃଷ୍ଟି ସହିତ ଯେହେତୁ ଫଳର ଆଶା ଥାଏ – ସେ ସମାଜ ସମ୍ମାନରୁ ବଞ୍ଚିତ ହୁଏ। କିନ୍ତୁ ଯିଏ ନିଜକୁ; ନିଜ ଅନୁଭୂତିକୁ – ଫଳର ଆଶା ନରଖି କେବଳ ବାଣ୍ଟିଦିଏ – ସେ କେବେହେଲେ ବିଘ୍ନ ଦେଖେନି –

ଫଳର ଆଶା ନାହିଁ ଯହିଁ
ବିଘ୍ନ ପଶିବ ଅବା କାହିଁ?

ଯାହାର ଫଳର ଆଶା ନାହିଁ ଏବଂ ଯିଏ ଆତ୍ମାରେ ଆତ୍ମାକୁ ଦେଖି ପାରେ ତା'ର କାହାପାଇଁ କି ଭୟ କି ଭ୍ରାନ୍ତି?

"ଆତ୍ମାରେ ଆତ୍ମା ଯେ ଦେଖନ୍ତି
ଜନ୍ମ ମରଣେ ନାହିଁ ଭ୍ରାନ୍ତି।"

ଏତକ କଥା ନିଜ ସାହିତ୍ୟ ବିଷୟରେ ଜଗନ୍ନାଥ ଦାସେ – ବୁଝେଇ ରଚନାର ଶୁଭ ଦେଇଛନ୍ତି ବୋଲି ମୋର ବିଶ୍ୱାସ। ହୁଏତ ଅନ୍ୟମାନେ ଏହାକୁ ଅନ୍ୟ ଅର୍ଥରେ

ନେଇ ପାରନ୍ତି କିନ୍ତୁ ଜଗନ୍ନାଥ ଦାସଙ୍କୁ ଏକ ସାହିତ୍ୟିକ ଭାବେ ଦେଖି – ମୁଁ ଏଇ ଭାବେ ଭାବିଛି।

ହଠାତ୍ ଗୁଡ଼ାଏ ତାଳି ଶବ୍ଦ ସହ ମୋ ଧ୍ୟାନଭଙ୍ଗ ହେଲା। ଲୀନାକୁ ଘୂରି ଚାହିଁଲି। ଅଶୋକ ଗଛର ଗଣ୍ଡିକୁ ଆଉଜି ଲୀନା ବସିଛି। ସେ ନିଜକୁ ନିଜେ ବୋଧେ ଅନ୍ୟ ସମସ୍ତଙ୍କଠାରୁ ନିର୍ବାସିତ କରିଛି। ସୀତା ବସିଥିଲେ ଅଶୋକ ବୃକ୍ଷତଳେ ରାବଣର ଲଙ୍କାରେ। ଲୀନା କିନ୍ତୁ ନିଜେ ନିଜେ ଅଶୋକ ଗଛତଳେ ବସିବାକୁ ବାଛି ନେଇଛି। ଅଶୋକ ବୃକ୍ଷର ଛାଲି ସିଝେଇ ଖାଇଲେ ନାରୀଙ୍କର ନାରୀ ରୋଗ ରୁହେନି ବୋଲି କୌଣସି ଏକ ଆୟୁର୍ବେଦୀୟ ପୁସ୍ତିକାରେ ପଢ଼ିଥିଲି। ସୀତା ହୁଏତ ଦ୍ରବ୍ୟଗୁଣ ବା ବୃକ୍ଷଗୁଣ ଜାଣିଥିଲେ। ଏତେଦିନ ଏକାଏକା ରହିବା ସତ୍ତ୍ୱେ ଓ ବିରହଜ୍ୱାଳା ତାଙ୍କୁ ରୁଗ୍ଣା କରି ନଥିଲା।

ହସ ଲାଗିଲା। ମନକୁ ମନ ହଠାତ୍ ହସି ଉଠିବାରୁ ଲୀନା ମୁହଁ ଉଠେଇ ମତେ ଚାହିଁଲା। ପ୍ରଶ୍ନବାଚୀ ତା' ଦୃଷ୍ଟିରେ। ତାକୁ କିନ୍ତୁ ସୁଯୋଗ ଦେଲିନି –

– ଶୀତ ଲାଗୁଛି ?

ମୁଁ ପଚାରିଲି।

– ହଁ।

ମୋ କୋଟ୍‌ଟାକୁ ଦେଲି ଘୋଡ଼େଇ ହେବା ପାଇଁ। ଦୁଇ କାନ୍ଧରେ କୋଟ୍‌ଟାକୁ ଘୋଡ଼େଇ ସେ ପୁଣି ଚୁପ୍‌ଚାପ୍ ବସି ରହିଲା।

– ଚାଲନ୍ତୁ ଉଠିବା ! ଭୋକ ଲାଗୁନି ?

– ଯିବାକୁ ଏଠୁ ଖୁବ୍ ଇଚ୍ଛା, ନାଁ ? କିନ୍ତୁ କୁଆଡ଼େ ଯିବା ? – ଶ୍ଳେଷଭରା ତା'ର ଉତ୍ତର।

– ଭୋକ ଲାଗିଲାଣି।

ହାଃ; ହାଃ; ହାଃ; –

ପାଗଳୀଙ୍କ ପରି ହସି ଉଠିଲା ଲୀନା।

– For a peice of Bread I let Mokshya wait ?

ମୁଁ ଲୀନାକୁ ଏଥର ବଡ଼ ସଂଦିଗ୍ଧ ନୟନରେ ଚାହିଁଲି। ମୋ ଚାହିଁବାରେ ସେ ଯେପରି ବେଶି କୁରୁଳି ଉଠିଲା।

– କୁଆଡ଼େ ଯିବା, କୁଆଡୁ ଆସିଛେ, କାହିଁକି ଆସିଛେ ଆପଣ କହି ପାରିବେ ?

ମୁଁ ମୁଣ୍ଡ ହଲେଇ ମନା କଲି।

–Oh Mister!

Hello Hello Hello!

Hello Hellow Hello!

I have just been born

In this place

Can't quite recognise a face

I just come from some where

Can't quite remember where

I Just come for some where

Hello Mister Hello...

ଗୀତଟିକୁ ଗାଉ ଗାଉ ଲୀନା ଦୋଳବେଦୀ ତଳକୁ ଡେ଼ଇଁ ପଡ଼ିଥିଲା। ତା' ପାଟିର ଗୀତ ଶୁଣି ପାଖ ଘରେ ଭଜନ ଗାଉଥିବା ଲୋକେ ଉଠି ଆସିଥିଲେ। ମୁଁ ବେଦୀ ଉପରେ କାକୁସ୍ଥ ହୋଇ ବସି ରହିଥାଏ। ସେମାନେ କିଏ ଲୀନାକୁ ପାଗଳୀ – କିଏବା ମୋର ପ୍ରେମିକା ଭାବି କଥା କହୁଥାନ୍ତି ! ଜଣେ ସଭାଆଡୁ ଉଠି ଯାଉଥିବା ଭଦ୍ରବ୍ୟକ୍ତି ଆମ ପାଖକୁ ଲାଗି ଆସି ଓ ଲୀନାର ନୃତ୍ୟ ଓ ଗୀତରେ ଆମୋଦିତ ହୁଅନ୍ତୁ ବା ରାଗନ୍ତୁ – ମୋ ପିଠିରେ ଟିକେ ହାତମାରି କହିଲେ –

– ଏଇଟା ଆଜ୍ଞା ରାୟ ରାମାନନ୍ଦଙ୍କ ମଠ – ଜଗନ୍ନାଥ ବଲ୍ଲଭ। ଆପଣମାନଙ୍କର ଏ ଅଶ୍ଳୀଳ ରାସର ଲୀଳା କ୍ଷେତ୍ର ନୁହେଁ। ବୁଝିଲେ !

ଲୀନା ଗୀତ ବନ୍ଦ କରିଦେଲା।

– ରାୟ ରାମାନନ୍ଦ କିଏ ? ଆପଣଙ୍କ ବାପା ? ଏ ମଠ ଆପଣଙ୍କ ସମ୍ପତ୍ତି ? କୋଉଠି ଲେଖା ହୋଇଛି ମନ ଆନନ୍ଦରେ କୀର୍ତ୍ତନ କରି ନାଚିବା ଏକ ପାପ ! କୀର୍ତ୍ତନ ଖାଲି କ'ଣ ବ୍ରଜ ବୋଲିରେ ହେବ ନ ହେଲେ ନଦିୟା ଭାଷାରେ ହେବ ? ଇଂଲିଶ୍‌ରେ ହେଇ ପାରେନି ?

ଲୀନାର ଏତାଦୃଶ ଆକ୍ରମଣରେ ଭଦ୍ରଲୋକ ଟିକେ ବ୍ୟତିବ୍ୟସ୍ତ ହୋଇଗଲା ପରି ମନେହେଲା। ଏକତ୍ରିତ ହୋଇଥିବା ଲୋକେ ବି କିଛି ଆଶ୍ଚର୍ଯ୍ୟ ଏବଂ କିଛି କୌତୂହଳତାର ସହ ଲୀନା ଚାରିପଟେ ଘେରି ଆସିଲେ।

– ଏ ମଠ ପ୍ରେମର ମଠ। ପ୍ରେମ ପାଇଁ ସାଧନାର ପୀଠ। ଚୈତନ୍ୟ ଚରିତାମୃତରେ ବର୍ଣ୍ଣନା ଅଛି – ସାର୍ବଭୌମଙ୍କ କଥାରେ ଚୈତନ୍ୟ ଗଲେ ବିଜୟ ନଗର – ରାୟ ରାମାନନ୍ଦଙ୍କୁ ଭେଟିବା ପାଇଁ। ଉଭୟଙ୍କ ଭେଟ ପରେ ଚୈତନ୍ୟ କୃଷ୍ଣ ତତ୍ତ୍ୱ ବିଷୟରେ ପ୍ରଶ୍ନ କଲେ ଏବଂ ରାମାନନ୍ଦ ଗୋଟିକ ପରେ ଗୋଟିଏ ତତ୍ତ୍ୱ ବୁଝେଇ ଚାଲିଲେ। ଭକ୍ତ ଓ ଭଗବାନର ସଂପର୍କ ସବୁ ବୁଝେଇବା ବେଳେ, 'ଏହା ପରେ ଆଉ କିଛି ବୋଲି ଚୈତନ୍ୟ ପଚାରି ଚାଲିଲେ। ଶେଷକୁ ରାମାନନ୍ଦ କହିଲେ – 'କାନ୍ତଭାବ ସର୍ବ ସାଧସାର। କାରଣ ଶାନ୍ତ, ହାସ୍ୟ, ବାତ୍ସଲ୍ୟ, ସଖ୍ୟ ଓ ମଧୁର ଏହି ଭାବରେ କୃଷ୍ଣ ସେବା କଲେ ସେ ମିଳିବେ ସତ୍ୟ, କିନ୍ତୁ କାନ୍ତାଭାବ ସବୁଠାରୁ ଉତ୍କୃଷ୍ଟ ସାଧତତ୍ତ୍ୱ ଅଟେ।" ରାଗାନୁଗା

ଭକ୍ତି ମାର୍ଗରେମହାମୁଦ୍ରାର ବ୍ୟାଖ୍ୟା କରି ସେ କହିଥିଲେ –

ପହିଲହି ରାଗ ନୟନ ଭଙ୍ଗ ଭେଲ
ଅନୁଦିନ ବାଢ଼ଲ ଅହୁଁ ନଗେଲ
ନ ସୋ ରମଣ, ନ ହାମ ରମଣୀ
ଦୁହିଁ ମନ ମନୋଭାବ ପେଶଲ ଜାନି।
× × ×
ନ ଖୋଜଲୁଁ ଦୂତୀ ନ ଖୋଜଲୁ ଆନ
ଦୁହୁଁକ ମିଳନେ ମଧ୍ୟତ ପାଂଚବାଣ।

ଚୈତନ୍ୟ ରାମାନନ୍ଦଙ୍କଠାରୁ ବ୍ରଜ ରସତତ୍ତ୍ୱ, ରାଧାକୃଷ୍ଣଙ୍କର ରସତତ୍ତ୍ୱ ଏବଂ ସାଧ୍ୟ ସାଧନତତ୍ତ୍ୱ ଶୁଣି ସାରିଲା ପରେ ତାଙ୍କଠାରୁ ବିଦାୟ ନେବାକୁ ବସିଲେ। ସେତେବେଳକୁ ଚୈତନ୍ୟ ରାମାନନ୍ଦଙ୍କୁ ନିଜ କଷଟି ପଥରରେ କଷି, ଖାଣ୍ଟି ସୁନା ବୋଲି ଅନୁଭବ କରି ସାରିଥିଲେ। ରାୟ ରାମାନନ୍ଦ ଚୈତନ୍ୟଙ୍କୁ ଅନୁରୋଧ କଲେ ଆଉ ଦଶଦିନ ତାଙ୍କ ପାଖରେ ରହି ଯିବାକୁ। ଏ କଥା ଶୁଣି ଚୈତନ୍ୟ ଉତ୍ତର ଯାହା ଦେଲେ ତା' ଜାଣନ୍ତି –

"ପ୍ରଭୁ କହେ ଆଇଲାମ ଶୁନି ତୋମାର ଗୁଣ
କୃଷ୍ଣ କଥା ଶୁନି ଶୁଦ୍ଧ କରାଇତେ ମନ।
ଯୈଛେ ଶୁନିଲ ତୈଛେ ଦେଖିଲ ତୋମାର ମହିମା
ରାଧାକୃଷ୍ଣ ପ୍ରେମରସ ଜ୍ଞାନେ ତୁମି ସୀମା।
ଦଶଦିନେର କା କଥା! ଯାବତ୍ ଆମି ଜୀବ
ତାବତ୍ ତୋମର ସଙ୍ଗ ଛାଡ଼ିତେ ପାରିବ।
ନୀଲାଚଲେ ତୁମି ଆମି ଥାକିବ ଏକ ସଙ୍ଗେ
ସୁଖେ ଗୋଆଇବ କାଲ କୃଷ୍ଣ କଥା ରଙ୍ଗେ।"

ତା'ପରେ ରାୟ ରାମାନନ୍ଦ ପୁରୀ ଚାଲି ଆସିଲେ। ଏ ମଠ ତିଆରି ହେଲା। କାନ୍ତାଭାବ ଖାଲି କହିବା ଦ୍ୱାରା ଆସେନି – ଏଥିପାଇଁ ସାଧନାର ଆବଶ୍ୟକତା ଅଛି। ସେଇ ମଠରେ ମୁଁ ମନ ଆନନ୍ଦରେ ପଦେ ଗୀତ ଗାଇଲେ ଆପଣମାନେ ଆମକୁ ଆକ୍ରମଣ କରିବାକୁ ମାଡ଼ି ଆସୁଛନ୍ତି? ହୁଁ – ! ଯୋର୍‌ରେ ପାଦ ବାଡ଼େଇଲା ଲୀନା।

– ଆସନ୍ତୁ ଯିବା! ମଠ ସବୁ ଭକ୍ତ ଓ ଭଗବାନର ସଂପର୍କରେ ବ୍ୟସ୍ତ – କିନ୍ତୁ ମଣିଷର ମଣିଷ ସହ ସଂପର୍କ ବିଷୟରେ କେହି ବି କିଛି କହିଲେନି। ସବୁ ବୋକାଙ୍କର ପାଣ୍ଡିତ୍ୟରେ ଆମେ ବି ବୋକା!

ମୁଁ ମନ୍ତ୍ର ମୁଗ୍ଧ ପରି ଉଠିଲି। ଲୀନା ଆଗେ ଆଗେ ଚାଲିଥିଲା ଏବଂ ମୁଁ ତା' ପଛେ ପଛେ ଏକ ବାଧ୍ୟ ଛାତ୍ରପରି ମଠର ବୁଲନ୍ଦ ଦରୱାଜା ଡେଇଁଲି।

ବାହାରେ ପଲ ପଲ ଭିକାରୀ ଶୋଇଛନ୍ତି ବଡ଼ଦାଣ୍ଡର ଧୂଳିରେ – ବୋଧେ

ରାତିରେ ମଠର କିଛି ପ୍ରସାଦ ବା ଅଭଡ଼ା ମିଳେ – ସେଇ ଅପେକ୍ଷାରେ। ଭିକାରୀଙ୍କୁ ଡେଇଁଲେ କିଛି ବୁଲା ଷଣ୍ଢ ଶୋଇ ଶୋଇ ପାକୁଳି କରୁଛନ୍ତି। ଦୁଇ ଚାରିଟା ବଡ଼ ବଡ଼ ଗାଈ ଏପଟ ସେପଟ ହେଉଛନ୍ତି। ଦାଣ୍ଡ ଉପରେ ସଂଜବେଳର ପରିବା ହାଟ ବସିଛି। ଗାଈ ସବୁ ମୁହଁ ମାରି ଦେଇଛନ୍ତି ଡାଲାରେ। ହେ– ହେ– କରି ଗୋଟେ ପାଞ୍ଚଣ ଧରି ଦୋକାନୀ ଦଉଡ଼ି ଆସୁଛି। ଗାଈ ଉଭୟରେ ଦଉଡୁଛି ଜନଗହଳି ଭିତରେ। ଲୋକେ ଇତସ୍ତତଃ ହେଉଛନ୍ତି ଡରରେ – ଧୂଳି ଉଡୁଛି। ବଡ଼ଦାଣ୍ଡର ଧୂଳି।

– ଏଇ ରାସ୍ତାରେ ମତେ ଛାଡ଼ିଦେବେ କହିଥିଲେ? ଏଇ ଖାଇବା ଏବଂ ଖାଇବାରୁ ଘଉଡ଼େଇବାର ଦୃଶ୍ୟରେ ଭରପୁର ଏ ଜୀବନ – ଏ ଲୋକଙ୍କର ଅଜଣା ଭୟରେ ଇତସ୍ତତ ହେବାର ଜୀବନ? କୋଟି କୋଟି ମୂକ ବଧୀର ଭିକ୍ଷାର୍ଥୀଙ୍କର ଜୀବନ? ନହେଲେ ଏ ନିରାଲମ୍ବ ଷଣ୍ଢଙ୍କର ନିର୍ଲିପ୍ତ ଜୀବନ? କ'ଣ ରାସ୍ତା ଦେଖେଇବେ? ନିକାଞ୍ଚନ ଠାରୁ ଗହଳିରେ ଭୟ କମ୍! କାହିଁ – କୋଉଠି? ଏ ଧୂଳିରେ କେବଳ ଆଖି ବୁଜିବା ସାର ହୁଏ। ପଳାୟନ ବି ସମ୍ଭବ ନୁହେଁ। ଆଖି ବନ୍ଦକରି ଖାଲି ଅତ୍ୟାଚାର ସହିବା କଥା। ମୁଁ ଲୀନାକୁ ପୁଣି ନ ବୁଝିପାରି ଚାହିଁଲି। ଲୀନା ବଡ଼ ଦୁର୍ବୋଧ ମନେ ହେଉଛି। ତାକୁ ମୁଁ କ'ଣ କହିବି? ମୁଁ ତ ନିଜେ ଉତ୍ତର ଖୋଜୁଛି।

ବଡ଼ଦାଣ୍ଡରେ ସଂଧ୍ୟା ଜମି ସାରିଛି। ଧୂଳିର ଏକ ପଟଳ ଶୀତ ସଂଧ୍ୟାରେ ବିଜୁଳି ଆଲୁଅକୁ ନିଷ୍ପ୍ରଭ କରୁଛି। ଏକରେ ସେକରେ ଏତେ କ୍ୟାବିନ – ଏତେ ଉଠା ଦୋକନଯେ, ବଡ଼ଦାଣ୍ଡ ଆଉ ବଡ଼ଦାଣ୍ଡ ହେଇ ନାହିଁ। ଓଡ଼ିଆଙ୍କ ବର୍ତ୍ତମାନର ମନ ଓ ହୃଦୟ ପରି ବଡ଼ଦାଣ୍ଡ ବି ସଂକୁଚିତ।

ଲୀନାକୁ ମୁଁ କିଛି ଉତ୍ତର ଦେଇ ପାରୁନି। ଗୁଡ଼ାଏ ଚିନ୍ତାରେ ଉବୁଟୁବୁ ହେଇ ପାଦ ଖାଲି ବଢ଼ି ଚାଲିଛି। ବାଁ ପାଖରେ ଏକ ପ୍ରେକ୍ଷାଳୟର ଗହଳି। ଗହଳି ଲମ୍ବି ଆସିଛି ସମୁଦାୟ ରାସ୍ତା ଉପରକୁ। ଗୋଟେ ବୁଲା ଷଣ୍ଢର ବେପରୁଆ ଦଉଡ଼ିରୁ ବର୍ତ୍ତିବାକୁ ଲୀନା ମୋ କରକୁ ଲାଗି ଆସିଲା। ଲୀନାର ବାହୁଦେଶରେ ମୋ ବାହୁ ଧକ୍‌କା ଖାଇଲା। ସେ ବୋଧେ ଅପ୍ରତିଭ ହେଲା।

– 'Sorry'। ଅନେକଟା ଲାଜ ଏବଂ ଅଳ୍ପ ଦୋଷୀର ମନନେଇ ଲୀନା ସଧୀରେ କହିଲା।

– କିଛି ଯାଏ ଆସେନି। ତେବେ, ମୋ ସହ ଯିବ କୁଆଡ଼େ ?

– କାହିଁ ! ଆପଣ ଯୁଆଡ଼େ ଯିବେ।

ମୁଁ ଜାଣିଥିଲି ଲୀନାର ପୁରୀରେ କେହି ନାହିଁ। ତେଣୁ ପଚାରିଲି –

– ଘର କୋଉଠି ତା' ବି ତ ତମେ କହିନ। କାହିଁକି ପୁରୀ ଆସିଥିଲ ?

– ଅଣା ହେଇଥିଲି –

– ମାନେ ?

– ସେଇ ଯେ ଜାନୁଆର, ଯାହାଠୁ ମତେ ଆପଣ ବଞ୍ଚେଇଲେ – ତାରି ସାଙ୍ଗରେ ମା' ମତେ ପଠେଇଥିଲା ପୁରୀ ବୁଲିବାକୁ। ମା' ନିଶ୍ଚୟ ଜାଣିଥିଲା – ବଦ୍‌ମାସ୍‌ଟା ବିଷୟରେ। ତଥାପି . . .

ମନେହେଲା ଲୀନାର କଣ୍ଠରୁଦ୍ଧ ହେଇ ଆସୁଛି।

– ସେ ଯୁବକ ସହ କ’ଣ ତମର ବିବାହ ସ୍ଥିର ହେଇଛି ?

– Please ! ମତେ ଆଉ ପଚାରନ୍ତୁନି . . .

ଲୀନା ଆଖିରେ ଲୁହର ମୁକ୍ତାବିନ୍ଦୁ । ମୁଁ ନିଜକୁ ଦୋଷୀ ମନେକରି ବାଁ କରକୁ ଚାହିଁଲି । ଏକ ବିରାଟ ଅଟ୍ଟାଳିକା । କୌଣସି ଏକ ଧର୍ମଶାଳା ବୋଧେ । କଥାର ପ୍ରସଙ୍ଗ ବଦଳେଇବା ପାଇଁ ହଠାତ୍ ମୋ ମୁହଁରୁ ବାହାରି ପଡ଼ିଲା . . .

– ଲୀନା ! କହି ପାରିବ, ଯୋଉ ଲୋକର ଦୁଆରୁ ଭିକାରୀ ଗୋଟେ ନୂଆ ପଇସା ନ ପାଇ ଫେରେ – ଯୋଉ ଲୋକମାନେ ପ୍ରତ୍ୟେକ ଦିନ କଳାବଜାରୀ, ମୁନାଫାଖୋରୀରେ ମସ୍‌ଗୁଲ – ଯୋଉ ଲୋକ ସ୍ପଷ୍ଟ ଦିବାଲୋକରେ ତା’ର ଆତ୍ମୀୟ ସ୍ୱଜନଙ୍କଠାରୁ ଆରମ୍ଭ କରି ପ୍ରତ୍ୟେକ ମଣିଷକୁ ଶୋଷଣ କରିବାରୁ ପଛାଏନି – ସେପରି ଲୋକେ ପୁଣି ଧର୍ମଶାଳା ତୋଳନ୍ତି କିପରି ?

ହଠାତ୍ ଏ ପ୍ରକାର ପ୍ରଶ୍ନରେ ଲୀନା ତା’ ବାଁ ପାଖର କେଶରାଶିକୁ ପଛକୁ ସାଉଁଳେଇ ନେଇ ମତେ ଏକ ଅଜବ ଆଖିରେ ଚାହିଁଲା – ତା’ପରେ ଆଖିରୁ ଲୁହ ପୋଛିଲା ।

– ଆପଣ ବେଶ୍ ଭୁଲେଇ ଦେଇ ପାରନ୍ତି !

– ନାଇଁ ଲୀନା ! ଏଇ ଧନୀ ଓ ବ୍ୟବସାୟୀଙ୍କ ମନୋବୃତ୍ତି ଉପରେ ମୁଁ ବହୁ ସମୟରେ ଭାବେ ।

– All property is theft – କୌଣସି ପ୍ରକାରେ ଚୋରୀ ନ କଲେ ସମ୍ପତ୍ତି ବଢ଼େନି । ସମ୍ପତ୍ତି ବଢ଼େଇବା ପାଇଁ ଯେଉଁ ବିବେକହୀନ କାର୍ଯ୍ୟ ମଣିଷ କରିଥାଏ – ତା’ ତାକୁ ଚିରକାଳ ସନ୍ତୁଳିତ କରେ, କାରଣ ପ୍ରତ୍ୟେକ ମଣିଷର ବିବେକ ଅଛି । କିଛି ଦାନ, ଧର୍ମରେ ଖର୍ଚ୍ଚ କରି – କିଛି ଧର୍ମଶାଳା, ମନ୍ଦିର ଗଢ଼ି, ପୁଷ୍କରଣୀ ବା କୂପ ଖନନ ଇତ୍ୟାଦି କରି – ସେ ଭାବେ ପ୍ରାୟଶ୍ଚିତ୍ତ କରୁଛି ।

– ମୂଳରୁ ଚୋରୀ ନ କରିଥିଲେ କ’ଣ ବା କ୍ଷତି ହୋଇଥାନ୍ତା ! ଏ ଭଣ୍ଡାମି ନୁହେଁତ ଆଉ କ’ଣ ?

– ମଣିଷ ବଡ଼ ଅଭିନୟ ପ୍ରବଣ ।

ଲୀନା ହସିଲା ମତେ ହାତଠାରି ଦେଖେଇଲା ଅନ୍ୟଏକ ଅଟ୍ଟାଳିକା ଆଡ଼େ – ଅନ୍ନପୂର୍ଣ୍ଣା ଥିଏଟର ବୋଲି ଏକ ବିଜ୍ଞାପନ ଲେଖାଅଛି ସେଠି ।

– କେତେ ଝଡ଼ ଝଂଜା ଭିତର ଦେଇ ଏ ରଙ୍ଗମଞ୍ଚ ଓ ଶିଳ୍ପୀମାନେ ବଞ୍ଚିଛନ୍ତି ଜାଣ ? ଓଡ଼ିଶାର ଏକମାତ୍ର ପେଷାଦାର ଥିଏଟର !

– ସିନେମା ଯୁଗରେ ଲୋକେ ରଂଗମଞ୍ଚ ପସନ୍ଦ ନ କରିବା ସ୍ୱାଭାବିକ । ନାଟକ ପୁସ୍ତକ ସବୁ କେବଳ ସ୍କୁଲ କଲେଜ ପାଠ୍ୟ ହେବା ପାଇଁ ନହେଲେ ଆଲମିରାର ଥାକରେ ବନ୍ଦୀ ହେବା ପାଇଁ ।

– ବଡ଼ କ୍ରୂର ଭାବେ କହୁଛ ।

– ନାଟକର ସାମାଜିକ ଆବଶ୍ୟକତା ଧୀରେ ଧୀରେ ଶେଷ ହେଇ ଆସୁଛି ମନୋରଂଜନ ଦୃଷ୍ଟିରୁ। ବାକି ଲେଖକମାନେ ଯଦି ନାଟକକୁ ଅବୋଧ କବିତା ପରି କରି ବସନ୍ତି – ତା'ହେଲେ ତ . . .

– ନାଟକକୁ କେବଳ ମନୋରଂଜନ ଭାବେ ଚିନ୍ତା କରୁଛ କାହିଁକି ?

– ତେବେ କ'ଣ ସାମାଜିକ ପରିବର୍ତ୍ତନର ମାଧ୍ୟମ ଭାବେ ଭାବିବ ?

– ନିଶ୍ଚୟ।

– ସେ ପ୍ରକାର ମୌଳିକ ରଚନା – ପୁଣି ସେ ପ୍ରକାର ମନୋଭାବ ନେଇ ନାଟକ ପରିବେଷଣ କରିବାକୁ ଓଡ଼ିଶାରେ ପ୍ରଚେଷ୍ଟା କାହିଁ? ଏଠିତ ନାଟ୍ୟକାରମାନେ କିଏ କେତେ ଇଉରୋପ୍‌କୁ କପି କରିପାରନ୍ତି – ତା'ର ପ୍ରତିଯୋଗିତା ଚାଲିଛି।

ଲୀନାର କଥାରୁ ମନେହେଲା – ସେ ପ୍ରକୃତିସ୍ଥ ହେଇ ସାରିଛି। ତେବେ ଲୀନାକୁ ନେଇ ମୁଁ ଯିବି କୁଆଡ଼େ? ଭୋକ ବି ପ୍ରବଳ ହେଲାଣି। ଅଥଚ ଝିଅଟା ଖାଇବା ପିଇବାର ନାଁ ଧରୁନି। ଝିଅଗୁଡ଼ା ପୁଅମାନଙ୍କଠୁ ବେଶି ଭୋକ ସହି ପାରନ୍ତି – ବେଶି କଷ୍ଟମଧ୍ୟ ଉଠେଇ ପାରନ୍ତି। ମତେ ହସ ଲାଗୁଥିଲା ମୋ ନିଜ ଉପରେ। ସକାଳୁ ବସ୍‌ରୁ ଓହ୍ଲେଇବା ଠାରୁ ଏଯାଏଁ ମୁଁ ଟିକେ ବି ବିଶ୍ରାମ ପାଇନି। ଘଟଣା ଚକ୍ରରେ କୁଆଡୁ କୁଆଡ଼େ ଗଲିଣି।

ଆମେ ଗୋଟେ ଛକ ନିକଟରେ ପହଞ୍ଚିଥିଲୁ। କର ଦୋକାନର ବିଜ୍ଞାପନରୁ ଜଣାପଡ଼ିଲା ଏହା 'ମରିଚିକୋଟ' 'କୋଟ'ର ଅର୍ଥ ଦୁର୍ଗ – ଦ୍ରାବିଡ଼ ଭାଷାରେ। ଏଠି ତା'ହେଲେ କ'ଣ ଆଗରୁ ଏକ ଦୁର୍ଗ ଥିଲା ? ଏଇ 'କୋଟ'ର ପଛକୁ ଚୋଡ଼ଗଙ୍ଗଦେବ ବସେଇଥିବା ସାହି ଅଛି ବୋଲି କୌଣସି ବହିରୁ ପଢ଼ିଥିଲି। ଚୋଡ଼ଗଙ୍ଗଦେବଙ୍କ ସାହିର ନାଁ ଯେପରି ଅପଭ୍ରଂଶ ହେଇ 'ଚୂଡ଼ଙ୍ଗ' ହେଇଗଲା, ସେ ସାହିର ବି ଏକ ପରିବର୍ତ୍ତିତ ଅବସ୍ଥାରେ – ତା'ହା ବେଶ୍ୟାପଡ଼ା ଭାବେ ବିଖ୍ୟାତ ହେଇଗଲା। ଛକ ଉପରର ଡାହାଣପଟକୁ ଏକ ସେବା ସଂଘର ଘର। ସେଇ ଆଡ଼କୁ ଚାହିଁ ଲୀନା ହଠାତ୍ ପଚାରି ଉଠିଲା –

– ପୁରୀ ପରି ଧର୍ମ ସ୍ଥାନମାନଙ୍କରେ 'ସେବାସଂଘ' ବହୁତ, ନା ?

ମତେ ହସ ଲାଗିଲା।

– ସେବା କିଏ କରେ, କାହାର ? ପୁଣି 'ସେବା'ର ଅନ୍ୟ ଏକ ଅର୍ଥ ଅଛି ପୁରୀରେ। ତା'ହେଲା 'ମହାପ୍ରସାଦ ସେବା କରିବା' – ଅର୍ଥାତ୍ ଖାଇବା। ସେବା ନାଁରେ ତ ସମସ୍ତେ ଏଠି ଖାଇ ଚାଲିଛନ୍ତି।

ଆମ ଦେହରେ ଏକ ସାଇକେଲ୍ ଧକ୍‌କା ବାଜୁ ବାଜୁ ରହିଗଲା। ଘୂରି ଚାହିଁଲି। ଜଣେ ଖଦଡ଼ ଧୋତି ଓ ପଞ୍ଜାବି ପିନ୍ଧା ମୋଟାଳିଆ ମଣିଷ। ଚଷମା ପିନ୍ଧିଛନ୍ତି – ଯାହାର ଗୋଟେ କାଚ କଳା। ସାଇକେଲ୍‌ଟି କେଉଁ ମାନ୍‌ଧାତା ଅମଳର। ଗୋଲ୍ ମୁହଁ, ତରତରିଆ

ଭାବେ ସେ ତାଙ୍କ ଭୁଲ୍ ସ୍ୱୀକାର କରିନେଲେ।

– ଆପଣଙ୍କ 'ସେବା'ର ଦୁଇଅର୍ଥ ଶୁଣି ଅଟକି ଯିବାକୁ ଚାହୁଁଥିଲି – ବ୍ରେକ୍ ଧରିଲାନି।

– କିଛି ଯାଏ ଆସେନି!

– 'ପ୍ରସାଦ ସେବା' କରିବା ଅର୍ଥରେ ହିଁ ଆଜିକାଲି ସବୁ ସେବାସଂଘ। ଏଇ ଯେଉଁ କରର କୋଠାଟି ଦେଖୁଛନ୍ତି – ତା'ର ପ୍ରାଣ ପ୍ରତିଷ୍ଠାତା ଥିଲେ ମୁରାରୀ ତ୍ରିପାଠୀ। ତାଙ୍କ ନାଁ ଶୁଣିଛନ୍ତି ?

– ଆଜ୍ଞା! ଏକ ସମୟରେ ସେବାସଂଘ ବୋଇଲେ ମୁରାରୀ ଭାଇନା ହିଁ ବୁଝାଯାଉଥିଲେ। ଶୁଣିଥିଲି – କାଳେ ରାତି ଅଧରେ ମୁର୍ଦ୍ଦାର ଉଠେଇବାକୁ ଲୋକ ନମିଳିବେ ବୋଲି ଗୋଟେ ସାଇକେଲ ରିକ୍ସା ଢ଼ାଞ୍ଚାରେ ସେ ଷ୍ଟ୍ରେଚର ତିଆରି କରେଇଥିଲେ। ଏକା ଏକା ନେଇ ଚାଲି ଯାଉଥିଲେ ସ୍ୱର୍ଗଦ୍ୱାର . . .

– ତାଙ୍କର ଚେଷ୍ଟାରେ ଏ ଧର୍ମ ସ୍ଥାନରେ ଯାହାକିଛି ସେବାକାର୍ଯ୍ୟ ଆରମ୍ଭ ହୋଇଥିଲା। ମୁରାରୀ ଭାଇନା ସମାଜର ବିଭିନ୍ନ କ୍ଷେତ୍ରରେ ଏତେ ଆଦୃତ ଥିଲେ ଯେ – ଏମ୍.ଏଲ୍.ଏ., ଏମ୍.ପି., କଲେକ୍ଟରମାନଙ୍କ କାନ ଧରି ଗାଳି ଦେଲେ ବି କେହି ଦୁଃଖ କରୁ ନଥିଲେ। ବରଂ ସାହାଯ୍ୟ କରୁଥିଲେ। ଆଉ ଏବେ ? 'ସେବାସଂଘ' ନାଁରେ ରଥଯାତ୍ରାବେଳେ କଡ଼ନ ପାସ୍ ଯୋଗାଡ଼ କରିବା ହେଇଛି ବଡ଼କାମ। ବାକିତ 'ପ୍ରସାଦ ସେବା'! ଏମାନଙ୍କ ସେବାସଂଘରେ ଆଜିକାଲି ସ୍ୱେଚ୍ଛାସେବକ ବି କାହାନ୍ତି ? ପଇସା ଦେଇ ଚାକର ରଖାଯାଇପାରେ – କିନ୍ତୁ ଚାକର ଓ ସ୍ୱେଚ୍ଛାସେବୀ କ'ଣ ଏକା କଥା ? ମୁରାରୀ ଭାଇନାଙ୍କ ସହ ପୁରୀରୁ 'ସେବା' ସରିଯାଇଛି।

– 'ନଟି ଭାଇନା!' କିଏ ଜଣେ ଡାକିଲା।

ଆମ ସାଙ୍ଗରେ କଥା କହୁଥିବା ଭଦ୍ରଲୋକ ପଛକୁ ବୁଲି ଚାହିଁଲେ। ଗୋଟେ ସ୍କୁଟର୍ ରୋକିଛି। ତା' ଉପରେ ଧଳାପ୍ୟାଣ୍ଟ ଓ ଧଳା ବୁସ୍‌ସାର୍ଟ୍ ପିନ୍ଧା, ମୋଟା ଫ୍ରେମ୍‌ର ଚଷମାବାଲା ଲମ୍ବା ଶ୍ୟାମଳ ଭଦ୍ରଲୋକ। ସ୍କୁଟରର ସିଟ୍‌ରେ ବସିବି ତାଙ୍କ ଉଚ୍ଚତା ଠିକ୍ ବୁଝି ହେଉଥିଲା।

– କଣହେ ସାମ୍ବାଦିକ!

– ଯାତ୍ରୀ ଧନ୍ଦା କରୁଛ – ନ . . .

ସାମ୍ବାଦିକଙ୍କ ଆଖି ଚଷମା ତଳୁ ଘୂରୁଥାଏ କୁରାଳ ଚକ୍ର ପରି। ଚଷମାଟା ଟିକେ ଖସି ଆସିଥାଏ ନାକ ଉପରକୁ। ସେ ଆଖିରେ ଅଜସ୍ର ପ୍ରଶ୍ନବାଚୀ। ମୁଁ ଲକ୍ଷ୍ୟ କଲି – ଲୀନାକୁ ଭଲ ଲାଗୁନି। ଜଟିଭାଇନା ଆମ ପାଖରୁ ସାମ୍ବାଦିକଙ୍କ ଆଡ଼େ ମୁହାଁଇଲେ। ଆମେ ଦୁହେଁ ଅଗତ୍ୟା ଛିଡ଼ା ହେଇ ରହିଲୁ – ଭଦ୍ରତା ଖାତିରରେ।

ଆଗରେ ଲଟେରୀ ଟିକେଟ ବିକ୍ରୟର ଉଠାକେନ୍ଦ୍ର ସବୁ। ସେମାନଙ୍କ ଡାକବାଜୀ

ଯନ୍ତ୍ରରୁ ଅହରହ ଶୁଭୁଛି ଭାଗ୍ୟର ଡାକରା – "ଆଜିଯେ ରାସ୍ତାର ଭିକାରୀ କାଲି ସେ ଲକ୍ଷପତି ହେଇଯାଇପାରିବ। କେବଳ ଗୋଟିଏ ଟଙ୍କାର କଥା! କିଏ ଜାଣେ – କାଲି କିଏ ଲକ୍ଷପତି ହେବ!'

ଜଟିଭାଇନା ଓ ସାମ୍ବାଦିକ ମହାଶୟ ଉଚ୍ଚ ସ୍ୱରରେ କଥାଭାଷା ହେଉଛନ୍ତି – ସହରର ସ୍ଥାନୀୟ ରାଜନୀତି ବିଷୟରେ। ଜନତାପାର୍ଟି ଭିତରେ ଏକତା ନାହିଁ। ଗୋଟେ ଦଳ ଏଠି ସବୁ ସୁବିଧା ନେଇଯାଉଛି। ଏ ଶାସନ ସେଇ ପୁରୁଣା କଂଗ୍ରେସୀ ଶାସନ ପରି!

ଲୋକ କିଏ ବଦଳିଛି କି? ...ଇତ୍ୟାଦି

ହଠାତ୍ ଲଟେରୀବାଲା ତା ପ୍ରଚାର ବନ୍ଦ କରି ଗୀତ ଲଗେଇଲା – ଗରାଖ ଦି'ଜଣ ଜମିଛନ୍ତି। ତାଙ୍କୁ ବୁଝେଇବାକୁ ଯିବାରୁ ଆଉ ଭାଗ୍ୟର ପ୍ରଚାର ସେ କରିପାରୁନି ବୋଧେ। ଗୀତ ବାଜୁଛି – "ପ୍ରେମିକାର ବାଡ଼ିଆଡ଼େ ବିଛୁଆତି, ବାଇଡଙ୍କ ବଣ"। ବୋର୍‌ଡମ୍ ଭାଙ୍ଗିବାକୁ ମୁଁ ଲୀନାକୁ କହିଲି।

– ଓଡ଼ିଆ ଗୀତର ସ୍ତର କେତେ ତଳକୁ ଗଲାଣି!

– ସାମାଜିକ ଆବଶ୍ୟକତା ଅନୁସାରେ ଗୀତ ହେଉଛି। ଲୋକେ ପସନ୍ଦ କରୁଛନ୍ତି।

– ବିଲ୍‌କୁଲ୍ ନୁହେଁ। ସ୍ରଷ୍ଟା ଲୋକଙ୍କର ରୁଚି ତିଆରି କରାଏ। ଏସବୁ ଗୀତ କେତେଦିନ ଲୋକଙ୍କ ମାନସପଟରେ ରହୁଛି, କୁହତ!

– ରୁଚି ତିଆରି କରିବେ – ନା କଳାକାରମାନେ ବଞ୍ଚିବାକୁ ପ୍ରଥମେ ଚେଷ୍ଟା କରିବେ?

– ବଞ୍ଚିବା ପାଇଁ କେବଳ କ'ଣ ଏଇ, ଅଜାତଶ୍ମଶ୍ରୁ ବାଳକ ବାଳିକାଙ୍କ ମନବିକାରକୁ exploit କରି ନିଶ୍ଚିତ ଭାବେ ବଞ୍ଚିବାକୁ ହେବ? 'ପ୍ରେମ' କ'ଣ ଏତେ କଦର୍ଯ୍ୟ ଭାବେ ଗୀତରେ ରୂପାୟିତ ହେବା ଉଚିତ୍? ଏବଂ ଏହାହିଁ କ'ଣ କଳା?

– ଅକ୍ଷୟ ମହାନ୍ତିଙ୍କୁ ଆପଣ ଭଲ ପାଆନ୍ତିନି ବୋଧେ!

– ମୁଁ ତାଙ୍କୁ ସମ୍ମାନ କରିଥିଲି – ଯେଉଁଦିନ ପ୍ରଥମେ ତାଙ୍କ 'ଜଗନ୍ନାଥଙ୍କ ମାଟିର ଗୀତ' ଶୁଣିଥିଲି। ପୁଣି ତାଙ୍କ ପ୍ରତି ବିରକ୍ତ ହେଇଥିଲି ଯେତେବେଳେ ସେ ଜରୁରୀ କାଳୀନ ପରିସ୍ଥିତିରେ ସରକାରୀ କଳର ଭାଟ ହେଇଥିଲେ। କିନ୍ତୁ 'ବିଛୁଆତି ବାଇଡଙ୍କ'ର ଗୀତ କାହିଁକି ମୋ ରକ୍ତକୁ ବାଧୁଛି। ତାଙ୍କୁ ମୁଁ ଭାବେ, ଜଣେ Trend setter – ତାଙ୍କଠୁ ଜାତି ବହୁତ କିଛି ଆଶାକରେ। ସେ ଆଶାଟା ବାଇଡଙ୍କ ବିଛୁଆତି ନୁହେଁ।

– ଆପଣ ତା'ହେଲେ ପ୍ରଫୁଲ୍ଲ କରଙ୍କୁ ଭଲ ପାଉଥିବେ!

– ଅକ୍ଷୟ ମହାନ୍ତିଙ୍କ ପ୍ରସ୍ତୁତ ରାସ୍ତାରେ ଗୋଡ଼େଇ ତାଙ୍କୁ ଟପିବାର ବୃଥା ପ୍ରୟାସ କରୁଛନ୍ତି ପ୍ରଫୁଲ୍ଲ କର। ଜଣକୁ ଟିପିବାକୁ ହେଲେ ମୋଡ଼ ଭାଙ୍ଗିବାକୁ ହୁଏ। ଭିନ୍ନ ରାସ୍ତା ଧରିବାକୁ ହୁଏ। ବ୍ୟାବସାୟିକ ବୃଦ୍ଧି ଯାହାର ସେମାନଙ୍କୁ କଳାକାର କୁହାଯାଏନି। ଶହେଟା ଅକ୍ଷୟ ମହାନ୍ତି ବା ପ୍ରଫୁଲ୍ଲ କର ଗୋଟେ ସୁନନ୍ଦା ପଟ୍ଟନାୟକର ଇଜ୍ଜତକୁ ସମାନ ନୁହଁନ୍ତି।

ସଂଗୀତ ରାଜ୍ୟରେ ଓଡ଼ିଆ ଯଦି କେହି ଓଡ଼ିଶା ବାହାରେ ପ୍ରସିଦ୍ଧ – ସେ କେବଳ ସୁନନ୍ଦା ପଟ୍ଟନାୟକ। ଅକ୍ଷୟ ବା ପ୍ରଫୁଲ୍ଲ ନୁହଁନ୍ତି। ଏମାନଙ୍କୁ ନେଇ ଆମେ ଓଡ଼ିଶା ବାହାରେ ଗର୍ବ କରିବାର ସ୍ୱପ୍ନ ବି ଦେଖିବୁନି।

ସ୍କୁଟରଟା ଚାଲିଗଲା। ଜଟିଭାଇନା ଆମ ପାଖକୁ ଫେରି ଆସୁଥିଲେ। ପ୍ରଫୁଲ୍ଲ କରଙ୍କ ନାଁଟା ବୋଧେ ସେ ଶୁଣି ପାରିଥିଲେ ଆମ କଥାରୁ।

– ପ୍ରଫୁଲ୍ଲ କରଙ୍କ ଗୀତ ଆପଣମାନଙ୍କୁ କେମିତି ଲାଗେ?

ମୁଁ ଓଲଟା ପଚାରିଲି –

– ପୁରୀରେ ତାଙ୍କର ଜନ୍ମ। ପୁରୀରେ ତାଙ୍କର ସବୁକିଛି – ତେବେ ସେ କ’ଣ ଆଗପରି ସାଇ ଛକରେ – ସାଙ୍ଗ ମେଳରେ – ଚନ୍ଦନଯାତ୍ରାର ଗାଧୁଆରେ – କି ଚନ୍ଦନ ଘରେ ଦିଅଁଙ୍କ ସାମ୍ନାରେ ଗୀତ ଗାଇବାକୁ ପୁରୁଣା ସାଙ୍ଗ ଡାକିଲେ – ଗାଆନ୍ତି? ନାଁ କେବଳ ସଭା ବନ୍ଦୋବସ୍ତ କରି ଟଙ୍କା ଦେଇ ଡାକିଲେ ପୁରୀ ଆସନ୍ତି ଗୀତ ଗାଇବାକୁ?

ଜଟିଭାଇନା କିଛି କହିବା ଆଗରୁ ଲୀନା କହିବସିଲା –

– ଆପଣ ଭୁଲିଯାଉଛନ୍ତି ସେ ଜଣେ ଚଳଚ୍ଚିତ୍ର ସଂଗୀତ ନିର୍ଦ୍ଦେଶକ। ତାଙ୍କର ଏତେଟା ଶସ୍ତା ହେବା ଉଚିତ୍ ନୁହେଁ।

– କିଏ ଶସ୍ତା ଆଉ କିଏ ମହରଗ କହିଲେ? ନିମାଇଁ ହରିଚନ୍ଦନ ସିଂହଦ୍ୱାରରେ ଯେତେବେଳେ ଗାଉଛନ୍ତି – ତାଙ୍କର ସେ କଳାତ୍ମକ ଆତ୍ମ ନିବେଦନ ଏ ସମାଜ ପାଇଁ ମୂଲ୍ୟବାନ – ନାଁ ଏଇ ମାରୁଓ୍ୱାଡ଼ି ବୁଦ୍ଧିର ‘ଗବେୟା’ – ଯେଉଁମାନେ ନିଜ root ଛାଡ଼ି ଦେଇ ସାରିଲେଣି – ସେମାନେ ଆମ ପାଇଁ ମୂଲ୍ୟବାନ୍? ଚଳଚ୍ଚିତ୍ରତ ଚୁଙ୍ଗୁଡ଼ି ବେପାରୀ ବି କରନ୍ତି – ଆଉ ପଇସା ଦେଲେ ‘ବାଈଜୀ’ମାନେ ସବୁଠି ଗାଇପାରନ୍ତି। ତାଙ୍କୁ କାହିଁକି ଇଜ୍ଜତ ଦେବୁ?

– ଆପଣ ଇଜ୍ଜତ ନ ଦିଅନ୍ତୁ! ସେମାନେ କିନ୍ତୁ ଜନପ୍ରିୟ।

– କଳା ସବୁବେଳେ କଳା। ଜନପ୍ରୟତା ଦି’ଦିନର

ଏଥର ଜଟିଭାଇନା ମୁହଁ ଖୋଲିଲେ –

– ବାବୁ! ତମ ଆକାଶବାଣୀ ପରା ଷ୍ଟାଣ୍ଡାର୍ଡ କରି ଦେଇଛି ଆଧୁନିକ ଓଡ଼ିଆ ଗୀତର! କେବଳ ପ୍ରେମ, ଚନ୍ଦ୍ର, ତାରା, ଜ୍ୟୋତ୍ସ୍ନା, ଫୁଲ, ବାସ୍ନା, ସପନ ଇତ୍ୟାଦି ଶବ୍ଦକୁ ନେଇ ଯେଉଁ ଗୀତ, ତାକୁଇ ଆକାଶବାଣୀ ପ୍ରଚାର କରେ। ଏଥିରୁ ଓଡ଼ିଆ ଗୀତର ଯାହା ଭବିଷ୍ୟତ ହେବା ଉଚିତ୍ ତା’ ହେଉଛି।

ଆମେ ଆଗେଇ ଯାଉଥିଲୁ। ରାତି ଘନେଇ ଆସୁଥାଏ। ଜଟିଭାଇନାଙ୍କଠୁ ସେତେବେଳକୁ ଆମେ ବୁଝି ସାରିଥାଉ ଯେ ସେ ଜଣେ ପଣ୍ଡା। ତାଙ୍କର ଯାତ୍ରୀ ବ୍ୟବସାୟ ଅଛି। ଆନ୍ଧ୍ର ଅଞ୍ଚଳଟି ତାଙ୍କର ପଣ୍ଡା ପଡ଼ିଆରୀଙ୍କ ଭିତରେ ସେ ହେଉଛନ୍ତି ପ୍ରଥମ ବ୍ୟକ୍ତି ଯିଏ ପୁରୀରୁ ଲୋକପ୍ରତିନିଧି ଭାବେ ବିଧାନସଭାକୁ ନିର୍ବାଚିତ ହୋଇଥିଲେ। ଆମେ ଚାଲି

ଚାଲି ଅନ୍ୟ ଏକ ବିରାଟ ଧର୍ମଶାଳା ପାରି କରି ସାରିଥିଲୁ।

ପୁରୀ ରାଜବାଟୀ ସାମ୍ନାରେ ହଠାତ୍ ମୋ ମୁଣ୍ଡକୁ ଏକ ଖିଆଲ ଆସିଲା କାଳେ ଜଟିଭାଇନା ଓରଫ୍ ଭଗବାନ୍ ପ୍ରତିହାରୀ ଜାଣିଥିବେ ଆଶାକରି ପଚାରି ଦେଲି –

– ଆଜ୍ଞା! 'ଗଜପତି'ଙ୍କର ଏଇ ରାଜବାଟୀ କ'ଣ ବହୁ ପୁରୁଣା?

– ନାଇଁ, ନାଇଁ! ଶ୍ୟାମାକାଳୀଙ୍କ ପାଖରେ ଯେଉଁ ସମସ୍ତ ଅଞ୍ଚଳ ଅଛି – ତା'ହେଲା ଏହାର ପୂର୍ବ ରାଜବାଟୀ। ଶ୍ୟାମାକାଳୀ ଥିଲେ ରାଜବାଟୀର ଠାକୁରାଣୀ।

ପୁରୀ ରାଜାଙ୍କୁ କାହିଁକି 'ଗଜପତି' କୁହନ୍ତି? କ'ଣ ବହୁ ହାତୀ ରଖୁଥିଲେ ବୋଲି? ଲୀନାର ପ୍ରଶ୍ନ

– ପାରଳାଖେମୁଣ୍ଡି ରାଜାଙ୍କୁ ବି 'ଗଜପତି' କୁହାଯାଏ।

– ତେବେ 'ଗଜପତି'ର ଅର୍ଥ କ'ଣ?

– ଓଡ଼ିଶା ରାଜାଙ୍କର ଏକ ବିରାଟ ହାତୀ ବାହିନୀ ଥିଲା। କପିଳେନ୍ଦ୍ର ଦେବଙ୍କର ଦୁଇଲକ୍ଷ ହାତୀ ଯୁଦ୍ଧ କରୁଥିଲେ ବୋଲି କେତେକ ଐତିହାସିକ ଲେଖିଛନ୍ତି। ମଧ୍ୟ ଯୁଗରେ ବାସ୍ତବଭାବେ ଓଡ଼ିଶା ହାତୀ ପାଇଁ ପ୍ରସିଦ୍ଧ ଥିଲା। ଦିଲ୍ଲୀ, ବଙ୍ଗଳା, ମାଳବ ଓ ଯଉନପୁର ଇତ୍ୟାଦିର ସୁଲତାନ୍‌ମାନେ ଓଡ଼ିଶା ଆକ୍ରମଣ କରୁଥିଲେ ହାତୀ ଲୋଭରେ। ସିରାତ୍-ଇ-ଫିରୁଜ ଶାହିରେ ବର୍ଣ୍ଣନା ଅଛିଯେ ସୁଲତାନ୍ ଫିରୋଜ୍‌ଶାହ ଓଡ଼ିଶାରୁ ଦିଲ୍ଲୀ ଫେରିଗଲା ବେଳେ ମହାନଦୀ କୂଳରେ ହାତୀମାନେ ତାରାପରି ବିଛେଇ ହେଇ ବୁଲୁଥିବାର ଦେଖିଥିଲେ। ଗଙ୍ଗରାଜା ଭାନୁଦେବ ଫିରୋଜ୍‌ଶାହାଙ୍କୁ ବହୁ ହାତୀ ଉପହାର ଦେଇ ସନ୍ଧି କରିଥିଲେ ବୋଲି ସେହି ପୁସ୍ତିକାରୁ ମଧ୍ୟ ଜଣାପଡ଼େ। ଆକବରଙ୍କ 'ଆଇନୁମୁଲ୍‌ଜ୍'ରୁ ଜଣାପଡ଼େ ଯେ ସେ ଯେଉଁ ତାସ୍ ଖେଳୁଥିଲେ – ସେଥିରେ ଥିଲେ ଚାରଟି ରାଜା ଏବଂ ପ୍ରତ୍ୟେକ ରାଜା ସହ ଏଗାରଟି କରି କାହାଁ ରହୁଥିଲା। ସେଇ ରାଜାମାନଙ୍କର କ୍ରମ ଥିଲା – ପ୍ରଥମେ ଅଶ୍ୱପତି। ସେ ଦିଲ୍ଲୀର ରାଜାପରି ଘୋଡ଼ସବାର – ତାଙ୍କ ପାଖରେ ତତ୍‌କାଳୀନ ଆଲଟଚାମର ଥିବାର ଅଙ୍କିତ ହୋଇଥିଲା। ତା'ପରେ ଥିଲା 'ଗଜପତି' – ହାତୀ ଉପରେ ଚଢ଼ିଥିବା ଓଡ଼ିଶାର ରାଜାପରି ଏବଂ ତୃତୀୟରେ ଥିଲା 'ନରପତି' ବିଜୟନଗରର ରାଜାଙ୍କ ପରି, ହୁଏତ ଆକବର ସେତେଦିନ ଯାଏଁ ଓଡ଼ିଶା ଓ ବିଜୟନଗର ବିଜୟ କରି ନଥିଲେ ବୋଲି – ଏପରି ଭାବେ ନିଜକୁ ଆମୋଦିତ କରୁଥିଲେ – କିନ୍ତୁ ଓଡ଼ିଶାର ରାଜାଙ୍କୁ 'ଗଜ' ସହ ସଂଶ୍ଳିଷ୍ଟ ଯେ କରାଯାଇଛି – ସେଥିରୁ ହାତୀ ସହ ଓଡ଼ିଶା ରାଜବଂଶର ଘନିଷ୍ଠ ସଂପର୍କ ସୂଚିତ ହୁଏ।

ଜଟିଭାଇନା ରାଜି ହେଲେନି।

– ଆପଣଙ୍କ ଇତିହାସରେ ଓଡ଼ିଶା ରାଜାଙ୍କୁ କେବେଠୁ 'ଗଜପତି' କୁହାଯାଉଛି ଜାଣନ୍ତି? ଅନନ୍ତବର୍ମା ଚୋଡ଼ଗଙ୍ଗ ଏବଂ ତାଙ୍କ ପ୍ରସିଦ୍ଧ ବଂଶଧରମାନେ କେହି ନିଜକୁ 'ଗଜପତି' ବୋଲି କୋଉଠି ବର୍ଣ୍ଣନା କରିନାହାନ୍ତି। ବର୍ତ୍ତମାନର ଆନ୍ଧ୍ରରେ ଥିବା ଭୀମେଶ୍ୱର

ଓ ଦ୍ରାକ୍ଷାରାମାଠାରେ ୧୨୭୪ ଖ୍ରୀଷ୍ଟାବ୍ଦର ଗୋଟିଏ ପଥର ଖୋଦେଇରୁ ଜଣାପଡ଼େ ଯେ 'ଗଜଘୋଟପତି' ପ୍ରଥମ ଭାନୁଦେବଙ୍କ ରାଣୀ ସେଠି ଏକ ମନ୍ଦିରର ଭବନ ନିର୍ମାଣ କରିଥିଲେ। ଚତୁର୍ଥ ନରସିଂହଦେବଙ୍କୁ 'ଗଜପତି' କୁହାଯାଉଥିବା କଥା ସୀମାଚଳମ୍‌ର ଶିଳାଲେଖରୁ ଜଣାପଡ଼େ। ମତ୍ତଭାନୁଦେବ ଥିଲେ ଶେଷ ଗଙ୍ଗରାଜା। ସେ ମଧ୍ୟ 'ଗଜପତି' ଶବ୍ଦ ବ୍ୟବହାର କରୁଥିଲେ। କିନ୍ତୁ ସୂର୍ଯ୍ୟବଂଶୀ ପ୍ରଥମ ଓଡ଼ିଆ ସମ୍ରାଟ କପିଳେନ୍ଦ୍ରଦେବଙ୍କ ଠାରୁ ସୂର୍ଯ୍ୟବଂଶର ଶେଷ ପର୍ଯ୍ୟନ୍ତ ଏଇ ଶବ୍ଦର ବାସ୍ତବିକ ମହତ୍ତ୍ୱ ଥିଲା। ମୁକୁନ୍ଦଦେବଙ୍କ ପରେ ଏ 'ଶବ୍ଦ' କେବଳ ଇତିହାସର।

ଲୀନା ହସିଲା ଏବଂ ରାଜବାଟୀ ଉପରେ ଲାଗିଥିବା କୌଣସି ଏକ ବ୍ୟାଙ୍କର ବିଜ୍ଞାପନ ଦେଖେଇଲା! 'ଗଜପତି'ଙ୍କ ରାଜବାଟୀ ଭଡ଼ା ଲାଗିଛି – ବ୍ୟାଙ୍କ୍ ହେଉଛି।

– ଇତିହାସ କି କଦର୍ଯ୍ୟ ମୋଡ଼ ନ ନିଏ! ଅଥଚ ଆଜିବି ଯେଉଁମାନେ ଗାଦିରେ ସେମାନେ ଇତିହାସଠୁ ଶିକ୍ଷା ନିଅନ୍ତିନି।

ଲୀନାର ଦୀର୍ଘଶ୍ୱାସ।

– ହଁ ଆଜ୍ଞା! ତା'ହେଲେ ଆପଣ କହୁଛନ୍ତି – 'ଗଜପତି' ସହ ହାତୀ ବାହିନୀର କିଛି ସଂପର୍କ ନାହିଁ?

ଜଟି ପଢ଼ିଆରୀ ହସିଲେ।

– ମତ୍ତଭାନୁଦେବ ବା ଚତୁର୍ଥ ନରସିଂହଦେବ – ଯେଉଁମାନେ ନିଜକୁ 'ଗଜପତି' କହୁଥିଲେ ସେମାନେ ଗଙ୍ଗବଂଶର ଅତି ନଗଣ୍ୟ ରାଜନ୍ୟବୃନ୍ଦ। ତାଙ୍କ ପରେ ପରେ ଗଙ୍ଗବଂଶ ଶେଷ ହେଇଗଲା। କେହି କେହି କହନ୍ତି ଦକ୍ଷିଣ ଓଡ଼ିଶାରେ କେଉଁଠି ଶେଷ ଗଙ୍ଗମାନେ ଏକ କ୍ଷୁଦ୍ର ରାଜ୍ୟରେ ରହିଗଲେ ଏବଂ ଉତ୍କଳର ସୂର୍ଯ୍ୟବଂଶ କଟକରେ ରାଜଧାନୀ କରି ନିଜକୁ 'ଗଜପତି' ବୋଲି ଘୋଷଣା କଲେ। ପୁରୀର ଯେଉଁ ରାଜା ଆଜି 'ରାଜାଧିରାଜ ବୀରଶ୍ରୀ ଗଜପତି ଗୌଡ଼େଶ୍ୱର, ନବକୋଟି କର୍ଣ୍ଣାଟୋତ୍କଳ ବର୍ଗେଶ୍ୱରାଧିରାୟ ଭୂତ ଭୈରବଦେବ, ସାଧୁଶାସନୋତ୍‌କରଣ, ରାଉତରାୟ, ଅତୁଳ ବଳ ପରାକ୍ରମ ସଂଗ୍ରାମ ସହସ୍ରବାହୁ, କ୍ଷତ୍ରୀୟକୁଳ ଧୂମକେତୁ, ଇତ୍ୟାଦି ବିରୁଦ ବ୍ୟବହାର କରନ୍ତି – ତା'ର ଆଦ୍ୟକର୍ତ୍ତା ହେଉଛନ୍ତି କପିଳେନ୍ଦ୍ରଦେବ। ଏହି ବିରୁଦ ଭିତରୁ 'ଗଜପତି' ଶବ୍ଦଟିକୁ ବ୍ୟବହାର କରିବା ପାଇଁ କପିଳେନ୍ଦ୍ରଦେବ ବହୁଦାନ ଦ୍ୱାରା ଅର୍ଜନ କରିଥିଲେ। କପିଳେନ୍ଦ୍ରଦେବଙ୍କର ପ୍ରଥମ ଶିଳାଲେଖ ବା ତାମ୍ରପତ୍ରମାନଙ୍କରେ ତାଙ୍କ ନାମ ପୂର୍ବରୁ 'ଗଜପତି' ବ୍ୟବହାର ହୋଇନି। ପ୍ରଥମଥର ପାଇଁ ୧୪୫୦ ଖ୍ରୀଷ୍ଟାବ୍ଦରେ ସେ ଏହି ବିରୁଦ ବ୍ୟବହାର କରିଥିବାର ପ୍ରତାପରୁଦ୍ରଙ୍କ ଅନନ୍ତଭରମ ତାମ୍ରପତ୍ରରୁ ଜଣାପଡ଼େ।

– ସେ ଦାନ କାହାକୁ ଦିଆହୋଇଥିଲା? ଏଇ ଶବ୍ଦଟିର ଏପରି କି ଆବଶ୍ୟକତା ଥିଲା ଯେ ଯାହାକୁ ଅର୍ଜନ କରିବା ପାଇଁ କପିଳେନ୍ଦ୍ରଦେବଙ୍କ ପରି ସମ୍ରାଟ – ଯିଏ ୧୪୩୫ରୁ ରାଜ୍ୟଶାସନ କରିବାକୁ ଆରମ୍ଭ କରିଥିଲେ, ସେ ଦାନ ଦେଇ 'ଗଜପତି'

ବିରୁଦ ଦରକାର କରୁଥିଲେ ?

ଲୀନା ବଡ଼ ଦୃଢ଼ ସ୍ୱରରେ କହିଲା ।

– ଓଡ଼ିଶାରେ ଆଜିଯାଏ ଓଡ଼ିଶା ଇତିହାସ ଉପରେ କି ଗବେଷଣାଟା ହେଉଛି ? ଓଡ଼ିଆ ପିଲା ପରା ଆଜିଯାଏଁ ଓଡ଼ିଶାର ଇତିହାସ ବି ପଢ଼ିବାକୁ ସୁଯୋଗ ପାଉନି ! ଆମେ ଏଠି ବିଲାତର ରଜାରାଣୀଙ୍କ କଥା ପଢ଼ିବୁ – ତିରିଶ ବର୍ଷର ସ୍ୱାଧୀନତା ପରେବି ? ନିଜ ବିଷୟରେ ଜାଣିବାର ପ୍ରଚେଷ୍ଟାକୁ ଏଠିକାର ବିଲାତ ଫେରନ୍ତା ଶିକ୍ଷା ଅଧିକାରୀମାନେ କିପରି ପସନ୍ଦ କରିବେ ! ତାଙ୍କ ଇଜ୍ଜତ କାଳେ ତଳେ ପଡ଼ିଯିବ ।

ଜଟି ଭାଇନାଙ୍କ କଥା ଶୁଣୁଶୁଣୁ ମୋର ମନେପଡ଼ିଲା ଜଣେ ବିଲାତ ପ୍ରଭାବି ଭଦ୍ରମହିଳାଙ୍କ କଥା । ଇଂରାଜୀ ସାହିତ୍ୟର ଅଧ୍ୟାପିକା ସେ, କୌଣସି ଏକ ବିଶ୍ୱବିଦ୍ୟାଳୟରେ । ତାଙ୍କ ସ୍ୱାମୀ ଜଣେ ଅଧ୍ୟାପକ ଥିଲେ ଏବଂ ଏବେ ସରକାରୀକଳରେ ଅଧିକାରୀ ଅଛନ୍ତି । ଥରେ ତାଙ୍କ ସହ ହଠାତ୍ ଦେଖା । କଥାଭାଷା କରୁ କରୁ ତାଙ୍କ ସ୍ୱାମୀଙ୍କୁ ପ୍ରଫେସର ଅମୁକ ନକହି ମୁଁ ମିଷ୍ଟର ଅମୁକ କହିଦେଲି । ଭଦ୍ରମହିଳା ବିରକ୍ତିକର ଭାବେ ମତେ ବାଧ କଲେ ତାଙ୍କ ସ୍ୱାମୀଙ୍କୁ 'ପ୍ରଫେସର' କହିବା ପାଇଁ । ତାଙ୍କର ଯୁକ୍ତି ଥିଲା – 'Once a professor, for ever a professor' ମୁଁ କିନ୍ତୁ ଏ ବିଲାତ ଢ଼ାଞ୍ଚାରେ ରାଜି ହେଲିନି । ବାଧ ହେଇ ତାଙ୍କୁ ରଗେଇ ଦଲି – ଆପଣଙ୍କ ସ୍ୱାମୀ ଫାଇଲ ଭିତରେ କ'ଣ ପ୍ରଫେସ୍ କରୁଛନ୍ତି ଯେ ତାଙ୍କୁ ମୁଁ ପ୍ରଫେସର୍ କହିବି ? ପଇସା ଅର୍ଜନ କରିବାକୁ କଲେଜରେ ପାଠ ପଢ଼େଇବା ଏବଂ କିଛି 'ପ୍ରଫେସ୍' କରି ଚିରଦିନ 'ପ୍ରଫେସର୍' ସମ୍ମାନ ଅର୍ଜନ କରିବା ଯେ ଏକା କଥା ନୁହେଁ ଭଦ୍ରମହିଳା ଜାଣିନାହାନ୍ତି ବୁଝି ଦୁଃଖ ଲାଗିଲା । ସମାଜପ୍ରତି ଏମାନଙ୍କର ବା ଦାନ କ'ଣ ? ବେଜାଏ ବିଦେଶୀୟ ଚିନ୍ତାଧାରାର ବୋକ୍ଚା ଆମ ମୁଣ୍ଡରେ ଚପେଇ, ସେମାନେ ଭାବନ୍ତି ସମାଜକୁ ଅଧିକାର କରି ବସିଛନ୍ତି । କେତେଦିନ ବସିବେ ଏମାନେ ? ମରିବା ପୂର୍ବରୁ କ'ଣ ଛାଡ଼ି ଯାଉଛନ୍ତି ଉତ୍ତର ପୁରୁଷଙ୍କ ପାଇଁ ? କୋଉ 'ପ୍ରଫେସର' ଯାହାକୁ ଆମେ ଏବଂ ଆମର ଦାୟାଦମାନେ ମନେ ରଖିବେ କାଳ କାଳ ? ଭାବୁ ଭାବୁ ମୁଁ ମନକୁ ମନ ହସି ପକେଇଥିଲି । ଲୀନା ଓ ପଢ଼ିଆରୀଏ ସେତେବେଳକୁ କ'ଣ କଥା ଭାଷା ହେଇଥିଲେ କେଜାଣି, ଲୀନା ମତେ ପଚାରିଲା – 'ହସିଲେ ଯେ !' – ନାଇଁ, ଏଇ ଓଡ଼ିଶା ଇତିହାସ ପଢ଼ ନହେବା ବିଷୟରେ ଭାବୁଥିଲି । ହଁ ଆଜ୍ଞା ! 'ଗଜପତି'ର ତା'ହେଲେ ଅର୍ଥ କ'ଣ ଭାବୁଛନ୍ତି – କହିଲେନିତ ?

ଗଜପତି ଓ ଡିକାଡେନ୍ସ :—

ହୋଟେଲ୍‌ରୁ ଗଣ୍ଡେ ଖାଇ ନେଇ ବଡ଼ଦାଣ୍ଡରେ ପାଦ ଦେଲାବେଳକୁ ରାତି ୯ଟା ବାଜି ସାରିଥିଲା। ହୋଟେଲ୍ ସାମ୍ନା ଗଜପତିଙ୍କ ନଅର। ଏକ ମୃତ ସାମ୍ରାଜ୍ୟର ଶେଷ ପୃଷ୍ଠାରେ ବି ସମୟର କଦର୍ଯ୍ୟ ଛାପ! ଗଜପତିଙ୍କ ନଅର ଭଡ଼ା ଲାଗିଛି। ସେଇ ବ୍ୟାଙ୍କ୍‌ର ସାଇନ୍‌ବୋର୍ଡକୁ ଚାହିଁ ହଠାତ୍ ଲୀନା କହିଲା — ଡିକାଡେନ୍ସ ନୁହେଁ ତ ଆଉ କ'ଣ? ଇତିହାସ ବଡ଼ କ୍ରୁର, ନାଁ?

— ରଥଯାତ୍ରା ଦିନ ଛେରାପହଁରା ପାଇଁ ଯେତେବେଳେ ବଡ଼ଠାକୁରଙ୍କର ଏଇ ବଡ଼ ସେବକ ବିଜେ କରନ୍ତି ସେତେବେଳେ ଆକାଶବାଣୀର ଧାରାବିବରଣୀ ପ୍ରଚାର କରୁଥିବା ପଣ୍ଡିତମାନଙ୍କର କଣ୍ଠ ପୁରାତନୀର ଜୟଗାନରେ କିପରି ଉଦାତ୍ତ ହେଇଉଠେ! ଅତୀତ ବୋଧହୁଏ ସବୁବେଳେ ମହନୀୟ।

— ସେଇଟା ଗୋଟେ ଜାତୀୟ କମ୍ପ୍ଲେକ୍ସ। ଅତୀତରେ ଆମେ ଏୟାଥିଲୁ କହି ନିଜକୁ ସନ୍ତୁଷ୍ଟ କରିବାର ଏକ ମିଛ ବାହାନା।

ଜଟି ପଡ଼ିଆରୀ ସାଇକେଲ୍ କାଢୁଥିଲେ ହୋଟେଲ୍ ଆଗରୁ। ଦୁଇଜଣ ଯୁବକ ତାଙ୍କୁ ଅଭିବାଦନ ଜଣେଇଲେ।

— ଆରେ! ହେଇତ ଅନାମବାଲା ଆସିଲେଣି! ଆପଣ ୟାଙ୍କୁ ପଚାରନ୍ତୁ 'ଗଜପତି'ଙ୍କ ବିଷୟରେ। ସେ ଯୁବକ ଦୁଇଜଣଙ୍କ ଆଡ଼େ ନିର୍ଦ୍ଦେଶ କରି ପଡ଼ିଆରୀଏ ଆମକୁ କହିଲେ। ଅନାମଙ୍କ ବିଷୟରେ ମୁଁ ଆଗରୁ ଶୁଣିଥିଲି। କେତେଜଣଙ୍କୁ ତାଙ୍କ ଭିତରୁ ଭେଟିଥିଲି ମଧ୍ୟ। ଏ ଥିଲେ ଆଉ ଦୁଇଜଣ। ତାଙ୍କୁ ନାଁ ପଚାରିବାର ଦୁଃସାହସ କରିପାରିଲିନି। କେବଳ ନମସ୍କାର କଲି। ସେମାନେ ପ୍ରତି ନମସ୍କାର କରି ଓଲଟା ପଚାରିଲେ —

— ଆପଣଙ୍କ ପାଇଁ କ'ଣ କରିପାରିବୁ କୁହନ୍ତୁ ତ!

— 'ଗଜପତି' ଶବ୍ଦର ଅର୍ଥ ଆମେ ବୁଝିବାକୁ ଚାହୁଁଥିଲୁ —

– ବର୍ତ୍ତମାନ ସେ 'ବିରୁଦ' ବ୍ୟବହାର କରୁଥିବା ମଣିଷଟି ବି ଏଇ ଶବ୍ଦର ପ୍ରକୃତ ଅର୍ଥ ବୁଝେଇ ପାରିବେ, ଏ ବିଶ୍ୱାସ ଆମର ନାହିଁ। ତେବେ ଅନାମଙ୍କ ଗବେଷଣା ବର୍ତ୍ତମାନ ସୁଦ୍ଧା ଯେତିକି ହେଉଛି – ତାହାହିଁ ଆମେ କହିପାରୁ –

– Please! ଲୀନା ଅନୁରୋଧ କଲା।

– ଆପଣମାନଙ୍କ ସହ କଥାଭାଷାରୁ ମୁଁ ଯେତିକି ଜାଣିଥିଲି ତା' ତାଙ୍କୁ କହିଛି।

ପଢ଼ିଆରୀଏ ମଝିରେ ବାଧା ଦେଲେ –

– 'ଗଜପତି' ଶବ୍ଦ ଯେ ହାତୀବାହିନୀ ସହ ସଂପର୍କିତ ନୁହେଁ ତା' ମୁଁ କହିଛି।

– ଠିକ୍ ତ! ଶେଷ ଗଙ୍ଗରାଜାମାନେ ଏ ବିରୁଦ ବ୍ୟବହାର ଯଦିଓ, କରିଥିଲେ – ତଥାପି, ଏ ଶବ୍ଦର ପ୍ରକୃତ ମହତ୍ତ୍ୱ ଆଣିଥିଲେ ସୂର୍ଯ୍ୟବଂଶୀ କପିଳେନ୍ଦ୍ର ଦେବ ଓ ତାଙ୍କ ପୁଅ ନାତିମାନେ। ତା'ପରେ ଏ ଶବ୍ଦ କେବଳ ନାମକୁ ମାତ୍ର ବ୍ୟବହୃତ ହେଉଛି। କପିଳେନ୍ଦ୍ରଙ୍କ ଆଦ୍ୟ ଜୀବନର ଶିଳାଲେଖରେ ବି ଏ ବିରୁଦର ବ୍ୟବହାର ଦେଖା ଯାଏନି। କପିଳେନ୍ଦ୍ର ଦାନ ଦେଇ ଏ ବିରୁଦ ଅର୍ଜନ କରିଥିଲେ। କ'ଣ ଦରକାର ଥିଲା ଏପରି ଏକ ବିରୁଦର? କାହାକୁ ଦାନ ଦେଇ ଏ ବିରୁଦ ଅର୍ଜନ କରାହେଇଥିଲା – ସେକଥା ମଧ୍ୟ ପ୍ରତାପରୁଦ୍ରଙ୍କ ଅନନ୍ତଭରମ୍ ତାମ୍ରପତ୍ର ସୂଚନା ଦିଏନି। ତେଣୁ ସବୁକିଛି ଅନୁମାନ ଉପରେ ହିଁ ବର୍ତ୍ତମାନ ଆଲୋଚନା କରାଯାଉ – ଲୀନା କୋଉଠି ବସିବା ପାଇଁ ଇଚ୍ଛାପ୍ରକାଶ କଲା। ଦ୍ୱିତୀୟ ଅନାମ ବନ୍ଧୁ ମନ୍ଦିର ଅଫିସ୍‌ର ପାହାଚଆଡ଼େ ଆଙ୍ଗୁଠି ଦେଖେଇଲା। ପୁଷମାସର କାଲୁଆ ପବନ ବଡ଼ ବ୍ୟସ୍ତ କରୁଥିଲା ବଡ଼ଦାଣ୍ଡର ପ୍ରତ୍ୟେକ ପଥଚାରୀଙ୍କୁ। ଲୀନା ମୋ କୋଟ୍‌ଟା କାନ୍ଧରେ ପକେଇ ମୁଣ୍ଡରେ ଓଢ଼ଣା ଦେଇ ବସିଲା – ଶୀତରୁ ରକ୍ଷାପାଇବା ପାଇଁ।

– ଏକଦା ଭାରତର ରାଜବଂଶମାନେ ଏବଂ ଯୁଦ୍ଧ ଇତ୍ୟାଦି ଧର୍ମ ସଂପର୍କୀୟ ଥିଲା। ଧର୍ମଗତ ଅନୁସାରେ ରାଜାମାନେ ନିଜର ବିରୁଦ ବ୍ୟବହାର କରୁଥିଲେ। ଅନେକ କ୍ଷେତ୍ରରେ ତତ୍କାଳୀନ ରାଜ୍ୟର ନାଗରିକଙ୍କ ଧର୍ମ ବିଶ୍ୱାସକୁ ଗ୍ରହଣ କରି ରାଜ୍ୟଶାସନ କରୁଥିଲେ। କପିଳେନ୍ଦ୍ର ଦେବଙ୍କ ବିରୁଦ 'ଗଜପତି ଗୌଡ଼େଶ୍ୱର ନବକୋଟି କର୍ଣ୍ଣାଟ କଳବର୍ଗେଶ୍ୱର'ର ବ୍ୟାଖ୍ୟା ଯଦି ରାଜ୍ୟ ଜୟର ସ୍ମୃତି ବୋଲି ଗ୍ରହଣ କରାଯାଏ ତା'ହେଲେ ହୁଏତ 'ଗଜପତି' ଶବ୍ଦଟି କୌଣସି ରାଜ୍ୟର ସୂଚନା ଦେଇପାରିବନି। ପଣ୍ଡିତ ବିନାୟକ ମିଶ୍ର ଏକ ଭିନ୍ନମତ ଦେଇଥା'ନ୍ତି। ଏଇ ବିରୁଦଟିକୁ ବ୍ୟାଖ୍ୟା କରିବାକୁ ଯାଇ ତାଙ୍କ ରଚିତ ଓଡ଼ିଆ ସାହିତ୍ୟର ଇତିହାସରେ ସେ ଲେଖନ୍ତି – 'ବୌଦ୍ଧମତ ସହିତ କପିଳଙ୍କ ସାଂଖ୍ୟମତର ବହୁ ସାମଞ୍ଜସ୍ୟ ଅଛି। କପିଳଙ୍କ ସାଂଖ୍ୟମତକୁ ସୂର୍ଯ୍ୟ ବା ଜ୍ଞାନବାଦ କୁହାଯାଏ ଓ ଏହି ମତରୁ ଭକ୍ତି-ଧର୍ମର ଉତ୍ପତ୍ତି ଘଟିଛି। ଜଗନ୍ନାଥଙ୍କ ମନ୍ଦିରର ଶିଳାଲିପିରେ କପିଳେନ୍ଦ୍ର ଦେବ କହିଅଛନ୍ତି, 'ଠାକୁର ଯାହା ଆଜ୍ଞା କରନ୍ତି, ତାହା ମୁଁ କରେ'। ଏଥିରୁ ଜଣାପଡ଼େ – ସେ ଭକ୍ତି ଧର୍ମ ଗ୍ରହଣ କରିଥିଲେ। ତାଙ୍କର ବିରୁଦ ମଧ୍ୟ ସେ ଭକ୍ତି ଧର୍ମ ଗ୍ରହଣ କରିଥିଲେ ସୂଚନା

କରୁଅଛୁ। ×××

ଗଜପତି ଅର୍ଥ ସିଂହ ବା ଉଡ୍‌ଡୀୟାନ ବନ୍ଧ। ଗୌଡ଼ ଶବ୍ଦ ଗୁଡ଼ ଶବ୍ଦରୁ ଉତ୍ପନ୍ନ ହୋଇଥିବାରୁ ତାହା ମାଧୁର୍ଯ୍ୟ ଭକ୍ତିର ପରିଚାୟକ। ନନ୍ଦରାଜା 'ନବକୋଟି ଶତେଶ୍ୱର' ଉପାଧି ଗ୍ରହଣ କରିଥିବାର 'ମୁଦ୍ରା ରାକ୍ଷସ'ରୁ ଜଣାଯାଏ। ବୁଦ୍ଧଦେବ କୋଟିଗ୍ରାମ ପରିଦର୍ଶନ, କରିଥିଲେ ଓ ମୟୂରଭଞ୍ଜ ସୂର୍ଯ୍ୟ ବଂଶର ପ୍ରତିଷ୍ଠାତା ବୀରଭଦ୍ର କୋଟିଗ୍ରାମରେ ବାସ କରୁଥିଲେ। 'କର୍ଣ୍ଣାଟ' ନାମଟି ସଂଗୀତର ପରିଚାୟକ। କଳବର୍ଗର ଅର୍ଥ ପ୍ରବର୍ଗ୍ୟ – ବିଦ୍ୟା ବା ପ୍ରାଣାୟାମ ଯୋଗସାଧନା। ଏପରି ଧର୍ମପ୍ରତି ତାଙ୍କର ଭକ୍ତିଥିଲା ଓ ଯେଉଁ ଦେଶକୁ ସେ ଯାଇଥିଲେ ସେ ଦେଶରେ ପ୍ରଚଳିତ ଧର୍ମ ପ୍ରତି ଭକ୍ତି ଦେଖାଇ ସେ ଦେଶକୁ ସହଜରେ ଜୟ କରିପାରିଥିଲେ। ରାମାୟଣରେ ସୁଭଦ୍ରାଙ୍କ 'କୋଟି' ଉଲ୍ଲେଖ କରାଯାଇଥିବାରୁ 'ନବକୋଟି'ର ଅର୍ଥ ତାନ୍ତ୍ରିକ ନବଗଙ୍ଗା ବା ମାତୃକା ପୂଜାକୁ ନିର୍ଦ୍ଦେଶ କରୁଅଛି।' ଏହିପରି ବିଶ୍ୱମୈତ୍ରୀର ଉପାସକ କପିଳେନ୍ଦ୍ର ଦେବଙ୍କ ଶାସନକାଳରେ ଜଗନ୍ନାଥଙ୍କ ଚତୁର୍ପାର୍ଶ୍ୱରେ ସର୍ବଧର୍ମ ସମନ୍ୱିତ ହୋଇ ପାରିଥିଲା ବୋଲି ପଣ୍ଡିତ ମିଶ୍ରଙ୍କ ମତ।

– 'ଗଜପତିର ଅର୍ଥ ସିଂହ ବା ଉଡ୍‌ଡୀୟାନବନ୍ଧ' ବୋଲି ବୁଝିଲେ ଏପରି ଏକ ଶବ୍ଦର ବ୍ୟବହାର ଜଣେ ରାଜାପାଇଁ କି ଦରକାର ଥିଲା? – ମୁଁ ପ୍ରଶ୍ନ କଲି।

– ଉଡ୍‌ଡୀୟାନ ବନ୍ଧ ସାଧନ କଲେ କଟିଦେଶ ସିଂହର କଟିପରି ହୋଇଯାଏ। ଯାହା ଫଳରେ ସାଧକ ଉଡ଼ିବାପରି ଶକ୍ତି ପାଏ ଏବଂ କାମକଳା କୁଶଳ ହୋଇଥାଏ। ଏହି ବନ୍ଧ ବୌଦ୍ଧ ବଜ୍ରଯାନ ମତ ସହ ସଂଶ୍ଳିଷ୍ଟ। ସୋନପୁରର ରାଜା ଇନ୍ଦ୍ରଭୂତି ଜଣେ ବଜ୍ରଯାନୀ ସିଦ୍ଧ ଥିଲେ। ତାଙ୍କ କନ୍ୟା ଲକ୍ଷ୍ମୀଙ୍କରା ଏହି ସାଧନାରେ ଏତେ ପ୍ରସିଦ୍ଧା ଥିଲେ ଯେ, ବହୁ ସାଧକ, ଏପରିକି ଚୀନ୍ ଓ ତିବ୍ବତର ତାଙ୍କ ଶିଷ୍ୟତ୍ୱ ଗ୍ରହଣ କରିଥିଲେ। ତାଙ୍କର 'ଅଦ୍ୱୟସିଦ୍ଧି' ଗ୍ରନ୍ଥ ତାଙ୍କ ପାଣ୍ଡିତ୍ୟର ପରିଚୟ ଦିଏ। ୭ମ ଶତାବ୍ଦୀ ବେଳକୁ ଇନ୍ଦ୍ରଭୂତିଙ୍କ ପ୍ରଭାବ ବିଶେଷ ପରିଲକ୍ଷିତ। ସେତେବେଳେ ଓଡ଼ିଶାରେ ବୌଦ୍ଧଧର୍ମର ପ୍ରସାର ମଧ୍ୟ ବହୁଳ ଭାବେ ହୋଇଥିଲା। ବ୍ରାହ୍ମଣ୍ୟ ପୂଜା ପଦ୍ଧତିକୁ ତତ୍‌କାଳୀନ ଓଡ଼ିଆ ସମାଜ ଗ୍ରହଣ କରୁ ନଥିଲା ଏବଂ ଆଦିବାସୀ ଅଧ୍ୟୁଷିତ ଅଞ୍ଚଳ ଓଡ଼ିଶାରେ ପ୍ରାଧାନ୍ୟ ବିସ୍ତାର କରିଥିବାରୁ ଚର୍ଯ୍ୟାସିଦ୍ଧମାନେ ଡୋମ୍ବୀ, ହାଡ଼ି, ଆଦିବାସୀମାନଙ୍କୁ ହିଁ ଲକ୍ଷ୍ୟ କରି ତାଙ୍କ କାବ୍ୟ କବିତା ରଚନାରେ ମନୋନିବେଶ କରୁଥିଲେ। ବ୍ରାହ୍ମଣମାନଙ୍କୁ ଉପହାସ କରି ଚର୍ଯ୍ୟାସିଦ୍ଧ ଲେଖୁଥିଲେ –

'ନଗର ବାହିରେରେ ଡୋମ୍ବୀ ତୋହରି କୁଡ଼ିଆ
ସୋଇ ସୋଇ ଯାଏ ଏକା ବ୍ରାହ୍ମଣ ନାଡ଼ିଆ।'

ଯବନ କୁଷାଣମାନଙ୍କ ଓଡ଼ିଶା ଆକ୍ରମଣକୁ ରକ୍ତବାହୁ ଆକ୍ରମଣର କିମ୍ବଦନ୍ତୀ ଭାବେ ଯଦି ଗ୍ରହଣ କରାଯାଏ – ତା'ହେଲେ କିମ୍ବଦନ୍ତୀ ଅନୁସାରେ ଜଗନ୍ନାଥଙ୍କୁ ସୋନପୁର ଜଙ୍ଗଲରେ ଲୁଚେଇ ରଖାଯାଇଥିବା କଥାଟିର ସତ୍ୟତା ପ୍ରମାଣିତ ହୁଏ – ଇନ୍ଦ୍ରଭୂତିଙ୍କ ଶୂନ୍ୟ ମନ୍ଦିରରେ ଜଗନ୍ନାଥଙ୍କ ବିଗ୍ରହ ସ୍ଥାପନାରେ। ଇନ୍ଦ୍ରଭୂତି ଜଗନ୍ନାଥ ଅଥବା ଶ୍ରେଷ୍ଠ ଜୀବ ବା

ବୁଦ୍ଧଙ୍କ ଭକ୍ତ ଥିବାରୁ ଏପରି ଅନୁମାନ ଯୁକ୍ତିଯୁକ୍ତ ମନେହୁଏ। ସମ୍ଭବତଃ ତାଙ୍କ ଦ୍ୱାରା ଶୈଳୋଦ୍ଭବମାନଙ୍କ ଦ୍ୱାରା ପ୍ରତିଷ୍ଠିତ ନୀଳମାଧବ ବିଗ୍ରହ ସ୍ଥାନରେ ବୌଦ୍ଧ, ଧର୍ମ ଓ ସଂଘର ପ୍ରତୀକ ପୂଜିତ ହୋଇଥିଲେ। ମାତ୍ର ଅଳ୍ପ ସମୟରେ ଇନ୍ଦ୍ରଭୂତିଙ୍କ ଶାସନର ପରିସମାପ୍ତି ହୋଇଥିଲା – ହର୍ଷବର୍ଦ୍ଧନଙ୍କ ମୃତ୍ୟୁ ସହ। ଇନ୍ଦ୍ରଭୂତି ମାଧବରାଜଙ୍କ ଦ୍ୱାରା ଯୁଦ୍ଧରେ ପରାସ୍ତ ଓ ନିହତ ହୋଇଥିଲେ। ପ୍ରଥମ ଭୌମରାଜା ଶିବକର ଦେବ କଙ୍ଗୋଦ ଅଧିକାର କରିବା ପରେ ପୁରୁଷୋତ୍ତମ କ୍ଷେତ୍ରରେ ମାଧବ ପୂଜାର ଅବସାନ ହୋଇଥିଲା। ସମ୍ଭବତଃ ଭୌମମାନଙ୍କ ସମୟରେ ନୀଳମାଧବ ଇନ୍ଦ୍ରଦ୍ୟୁମ୍ନ ପୁଷ୍କରିଣୀ ନିକଟକୁ ଶ୍ରୀମନ୍ଦିରରୁ ସ୍ଥାନାନ୍ତରିତ ହୋଇଥିଲେ। ଭୌମବଂଶୀ ନୃପତିମାନେ ବୌଦ୍ଧ ଥିଲେ କିନ୍ତୁ ସେମାନଙ୍କ ରାଜତ୍ୱର ଶେଷଆଡ଼କୁ ଶାକ୍ତ ପୂଜାର ପ୍ରବର୍ତ୍ତନ ଓ ପୁଳିନ୍ଦ ବା ଶବରମାନଙ୍କ ସହ ଉତ୍ତମ ସଂପର୍କ ସ୍ଥାପନ ପାଇଁ ଆଗରୁ ପ୍ରତିହତ ହୋଇଥିବା, ବିଷ୍ଣୁ ପୂଜାର ପ୍ରଚଳନ ହୋଇଥିବାର ଶୁଭାକର ଦେବଙ୍କ ହିନ୍ଦୋଳ ତାମ୍ରଶାସନରୁ ପ୍ରମାଣ ମିଳେ। ପୁରୁଷୋତ୍ତମ କ୍ଷେତ୍ରରେ ବିମଳା ଓ କାକଟପୁରର ମଙ୍ଗଳା ଏବଂ ତ୍ରିଭୁବନ ମହାଦେବୀଙ୍କ ନାମାନୁସାରେ ଲିଙ୍ଗରାଜ ମନ୍ଦିରର ଭୁବନେଶ୍ୱରୀ ବା ତ୍ରିଭୁବନେଶ୍ୱରୀଙ୍କ ପୂଜାର ପ୍ରଚଳନ ହୋଇଥିବା ଖୁବ୍ ସମ୍ଭବ। ଆଉ ମଧ୍ୟ ଭୌମମାନଙ୍କ ସମୟରେ ଜଗନ୍ନାଥଙ୍କ ମନ୍ଦିରରେ ବୌଦ୍ଧ ତ୍ରିରତ୍ନଙ୍କ ନୂତନ ସଂସ୍ଥାପନା ସହିତ ରଥଯାତ୍ରାର ପ୍ରଚଳନ ହୋଇଥିବା ମନେହୁଏ। ତେଣୁ କାକଟପୁର ମଙ୍ଗଳାଙ୍କ ନିର୍ଦ୍ଦେଶରେ ଜଗନ୍ନାଥଙ୍କ ଦାରୁ ବିଗ୍ରହର ଅନ୍ୱେଷଣ ଓ ପରେ ପରେ ଇନ୍ଦ୍ରଭୂତିଙ୍କ ଦାରୁବିଗ୍ରହ ପ୍ରତିଷ୍ଠାର ସ୍ମାରକୀ ରୂପେ ଦେବତାଙ୍କ ନବ ବିଗ୍ରହ ନିର୍ମାଣ ସହିତ ରଥଯାତ୍ରାର ପ୍ରବର୍ତ୍ତନ ହୋଇଥିବା ମନେହୁଏ। ମଙ୍ଗଳା ଇନ୍ଦ୍ରଭୂତିଙ୍କ ରାଣୀଙ୍କ ଦ୍ୱାରା ପୂଜିତା ଅଥବା ତାଙ୍କ ଦ୍ୱାରା ପ୍ରତିଷ୍ଠିତା ଦେବୀ ହୋଇପାରନ୍ତି। ତେଣୁ ନବକଳେବରରେ ମଙ୍ଗଳାଙ୍କ ଆଜ୍ଞାର ଆବଶ୍ୟକତା ଉପଲବ୍ଧ ହୋଇଥିବା ମନେହୁଏ। ବୌଦ୍ଧ ଧର୍ମାବଲମ୍ବୀ ଭୌମମାନେ ଇନ୍ଦ୍ରଭୂତିଙ୍କ ପ୍ରତିଷ୍ଠିତ ଜଗନ୍ନାଥ ବିଗ୍ରହ ତଥା ମଙ୍ଗଳାଙ୍କର ସମ୍ମାନାର୍ଥେ ଏହି ଉଦ୍ୟମ କରିଥାଇ ପାରନ୍ତି। ଭୌମମାନେ ୭ମ ଶତାବ୍ଦୀଠାରୁ ଦଶମ ଶତାବ୍ଦୀ ମଧ୍ୟରେ ରାଜତ୍ୱ କରିଥିବାର ଜଣାଯାଇଛି। ଓଡ଼ିଶା ରାଜ୍ୟ ସଂଗ୍ରହାଳୟରେ ସଂରକ୍ଷିତ ରଥଯାତ୍ରାର ଫଳକ ଭୌମବଂଶ ଦ୍ୱାରା ବା ସେଇ ସମୟରେ ପ୍ରସ୍ତୁତ ହୋଇଥିବାର ଐତିହାସିକମାନେ ମତ ଦିଅନ୍ତି। ଭୌମମାନେ ଭୂୟାଁବଂଶଜ ଆଦିବାସୀ ଥିବାରୁ ସେମାନଙ୍କ ସମୟରେ ଦେବୀ ପୂଜା ଓ ରଥଯାତ୍ରା ପ୍ରଚଳନକୁ ଆଦିବାସୀଙ୍କ ସାଂସ୍କୃତିକ ପୃଷ୍ଠଭୂମିରୁ ଅନୁମାନ କରିବା ମଧ୍ୟ ସମୀଚୀନ ମନେହୁଏ। ଭୌମ୍ୟମାନଙ୍କ ପଛର କେଶରୀ ବଂଶ ଉତ୍କଳର ରାଜା ହେଲେ। ସେ ସମଗ୍ର ଓଡ଼ିଶାର – ଅର୍ଥାତ୍ କୋଶଳ, ଉତ୍କଳ ସହିତ ଆଦିବାସୀ ଅଧ୍ୟୁଷିତ ଓଡ଼ିଶାର ଶାସକ ଥିଲେ। ବିଭିନ୍ନ ଜାତି ଓ ତାଙ୍କ ଧର୍ମଧାରଣାକୁ ସମ୍ମିତ ନ କରି ଓଡ଼ିଶାର ସମ୍ରାଟ ହେବା ଅସମ୍ଭବ ମନେ କରି, ଯଯାତି – ଜଗନ୍ନାଥ ଚେତନାରେ ସର୍ବଧର୍ମ ସମନ୍ୱୟ ଆଣିବାକୁ ପ୍ରଚେଷ୍ଟା କରିଥିଲେ। ସେ ଶବର ଓ ପୁଳିନ୍ଦ ଆଦିଙ୍କ ବିଷ୍ଣୁ ବା ଚକ୍ରଧର ବିଷ୍ଣୁ ବା ମାଧବ, ନାଗ

ତଥା ଶୈବମାନଙ୍କ ସଂକର୍ଷଣ ବା ଶିବ, ଭୂୟାଁ ବା ଭୌମ ତଥା ବୌଦ୍ଧମାନଙ୍କ ଧର୍ମ ତଥା ଶକ୍ତିଙ୍କ ସୂଚକ ସୁଭଦ୍ରା, ଏବଂ କନ୍ଧ, ସ୍ତମ୍ଭ, ଶୁଲ୍‌କି, ନଳ ଓ ଭଞ୍ଜମାନଙ୍କ ସ୍ତମ୍ଭେଶ୍ୱରୀ ତଥା ଚକ୍ରଧର ବିଷ୍ଣୁଙ୍କ ପ୍ରତୀକ ସୁଦର୍ଶନ ପୂଜାର ପ୍ରଚଳନ ସହିତ ତାହାର ସମନ୍ୱୟ କରିବା ପାଇଁ ଉଦ୍ୟମ କରିଥିଲେ। ଉତ୍କଳର ଗଙ୍ଗବଂଶ ରାଜତ୍ୱ କେଶରୀ ବଂଶ ପରେ ପ୍ରତିଷ୍ଠିତ ହେଲା। ଗଙ୍ଗବଂଶ ଦାକ୍ଷିଣାତ୍ୟରୁ ଓଡ଼ିଶାକୁ ଆସିଥିଲେ – କେଶରୀ ଓ ଗଙ୍ଗବଂଶ ରାଜାଙ୍କ ସମୟରେ ଓଡ଼ିଶାର ବ୍ରାହ୍ମଣ ଶାସନମାନ ବେଶି ବେଶି ପ୍ରତିଷ୍ଠିତ ହୋଇଥିଲା। କାରଣ କେଶରୀ ଓ ଗଙ୍ଗରାଜାମାନେ ଅଣଓଡ଼ିଆ ଥିବାରୁ ଏଠି ନିଜର ଆସ୍ଥାନ ସୁଦୃଢ଼ କରିବା ପାଇଁ ସେମାନେ ରାଜଭକ୍ତ ତଥା ରାଜ-ଆଶ୍ରିତ ଅଣଓଡ଼ିଆ ବ୍ରାହ୍ମଣମାନଙ୍କୁ ଓଡ଼ିଶାରେ ପ୍ରତିଷ୍ଠିତ କରାଇ ତାଙ୍କ ମାଧ୍ୟମରେ ଧର୍ମର ଦ୍ୱାହି ଦେଇ ସମାଜକୁ କରଗତ କରିବା ପାଇଁ ପ୍ରଚେଷ୍ଟା ନିଶ୍ଚୟ କରିଥିବେ। ବ୍ରାହ୍ମଣ୍ୟ ସମର୍ଥନ ସତ୍ତ୍ୱେ ଓଡ଼ିଶାରେ ଗଙ୍ଗବଂଶ ଦୁର୍ବଳ ହୋଇ ଆସିଲା କାରଣ ସାଧାରଣ ଓଡ଼ିଆ ଏବଂ ଆଦିବାସୀ ପ୍ରାୟତଃ ବୌଦ୍ଧ ଧର୍ମର ଉପାସକ ଥିଲେ ଏବଂ ବ୍ରାହ୍ମଣ୍ୟ ସଂସ୍କୃତିକୁ ଗ୍ରହଣ କରୁ ନଥିଲେ। ତେଣୁ ବୋଧହୁଏ ସାଧାରଣ ଲୋକଙ୍କ ସମର୍ଥନ ପାଇବା ପାଇଁ – ବୌଦ୍ଧ ଧର୍ମର ପ୍ରତୀକ 'ଗଜ'ର 'ପତି' ବା 'ଗଜପତି' ଭାବେ ଶେଷ ଗଙ୍ଗରାଜାମାନେ ନିଜକୁ ବର୍ଣ୍ଣନା କରିଥିଲେ। ତା'ପରେ ସୂର୍ଯ୍ୟବଂଶୀ ଓଡ଼ିଆ ରାଜା କପିଳେନ୍ଦ୍ର ବହୁ ଦାନ କରି ଏହି ଉପାଧି ଅର୍ଜନ କରିଥିଲେ।

୧୪୧୫ ଖ୍ରୀଷ୍ଟାବ୍ଦ ବେଳକୁ ଓଡ଼ିଶାରେ କ'ଣ ବୌଦ୍ଧ ପ୍ରଭାବ ଥିଲା ?

ଲୀନା ମୁହଁ ଖୋଲିଲା।

– ଦେଖନ୍ତୁ – ଗୋଟେ ଜାତିର ଉଚ୍ଚଶ୍ରେଣୀ ଯେତେ ଶୀଘ୍ର ନିଜର ଧର୍ମ ବା ମତ ପରିବର୍ତ୍ତନ କରେ ତା' ତଳଶ୍ରେଣୀର ଲୋକେ ପାରନ୍ତିନି। ବରଂ ତଳଶ୍ରେଣୀର ଲୋକେ ବେଶି ପରମ୍ପରାବାଦୀ ହୋଇଥାଆନ୍ତି। ତତ୍‌କାଳୀନ ଓଡ଼ିଆ ସମାଜର ଉଚ୍ଚକୁଳର ଲୋକେ ନିଜର ବ୍ୟକ୍ତିଗତ ଫାଇଦା ପାଇଁ – 'ରାଜା କାଳସ୍ୟ କାରଣମ୍' କହି ରାଜଧର୍ମକୁ ନିଜର ବୋଲି ଗ୍ରହଣ କରି ନେଇଥିବେ କିନ୍ତୁ ସାଧାରଣ ଲୋକ ପରିବର୍ତ୍ତିତ ହୋଇ ନଥିବେ। ବଜ୍ରଯାନ ଓଡ଼ିଶାରେ ଏତେ ପ୍ରଭାବ ବିସ୍ତାର କରିଥିଲା ଯେ – ଏବେଯାଏଁ ପୁରୀରେ ଅର୍ଦ୍ଧାଶନୀ, ବିମଳା, ଇନ୍ଦ୍ରାଣୀ, କମଳାତ୍ମୀକାଙ୍କ ପୂଜା ଓ ଓଡ଼ିଶାସାରା ଅଷ୍ଟକିଳା ଦେବୀଙ୍କ ପୂଜା ଚାଲିଛି। ବଜ୍ରଯାନ ଓ ତନ୍ତ୍ରର ମିଶ୍ରଣ ଘଟିଥିଲା। ବୌଦ୍ଧମତବାଦ ଜନମାନସକୁ ଏପରି ଆକ୍ରାନ୍ତ କରି ରଖିଥିଲା ଯେ – ତାଙ୍କୁ 'ପ୍ରଚ୍ଛନ୍ନ ବୌଦ୍ଧ' ବୋଲି କୁହାଯାଉଥିଲା। ବ୍ରାହ୍ମଣମାନେ ବୌଦ୍ଧଧର୍ମାବଲମ୍ବୀମାନଙ୍କୁ ଉପହାସ କରି 'ମୂର୍ଖ' କହିବାକୁ ଯାଇ ଗୋଟେ ନୂଆ ଶବ୍ଦ ବି ସୃଷ୍ଟି କରିଥିଲେ – ତା'ହେଲା 'ଗଜମୂର୍ଖ'। ଗଜ ବୌଦ୍ଧ ଧର୍ମର ପ୍ରତୀକ। କପିଳେନ୍ଦ୍ର ଦେବଙ୍କ ରାଜତ୍ୱରେ ହିଁ ପୁରୀ ଗୁଣ୍ଡିଚା ଯାତ୍ରାରେ 'ଛେରା ପହଁରା' ସେବାର ଆରମ୍ଭ ହେଲା ବୋଲି ପଣ୍ଡିତ ନୀଳକଣ୍ଠଙ୍କ ମତ। 'ସମାଜର ହୀନତମ କାର୍ଯ୍ୟ ସମ୍ରାଟର' – କହି କପିଳେନ୍ଦ୍ର ଓଡ଼ିଆ ଚେତନାରେ ଶାସକ ଓ ଶାସିତ ସଂପର୍କରେ ଯେଉଁ ପରିବର୍ତ୍ତନ

ଆଣିଲେ – ତାହା ବ୍ରାହ୍ମଣ୍ୟ ଧର୍ମର ଚତୁଃବର୍ଣ୍ଣ କର୍ମଭେଦରେ ଏକ ବିପ୍ଳବ ଥିଲା। ସେ ନିଜେ ଏକ ଛୋଟଜାତିରେ ଜନ୍ମଗ୍ରହଣ କରିଥିବାରୁ ଏବଂ ତତ୍‌କାଳୀନ ସମାଜର ଛୋଟଜାତିମାନେ ବୌଦ୍ଧ ଧର୍ମଦ୍ୱାରା ପ୍ରଭାବିତ ଥିବାରୁ କପିଳେନ୍ଦ୍ର ଦେବ ଏପରି ଏକ ଦୁଃସାହସିକ କର୍ମ ସମ୍ପାଦନ କରି – ସର୍ବସାଧାରଣଙ୍କର ପ୍ରିୟ ଭାଜନ ହୋଇଥିଲେ ଏବଂ ଏକ ବିରାଟ ସେନା ପ୍ରସ୍ତୁତ କରିବାକୁ ସମର୍ଥ ହୋଇଥିଲେ। ତାଙ୍କର ଏହି ଅକ୍ଷତ୍ରୀୟ କାର୍ଯ୍ୟ ପାଇଁ କେତେକ ଚତୁଃବର୍ଣ୍ଣରେ ବିଶ୍ୱାସୀ ବ୍ରାହ୍ମଣ ତାଙ୍କୁ ବାଛନ୍ଦ କରି ଓଡ଼ିଶା ଛାଡ଼ି ଚାଲି ଯାଇଥିଲେ ସିନା – କପିଳେନ୍ଦ୍ର କିନ୍ତୁ ଓଡ଼ିଶା ଇତିହାସରେ ଦ୍ୱିତୀୟ ଖାରବେଳ ଭାବେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହେଲେ। ତାଙ୍କରିଠାରୁ ବଂଶାନୁକ୍ରମେ ସମସ୍ତ ଉତ୍କଳୀୟ ନୃପତି 'ଗଜପତି' ବୋଲି ଅଭିହିତ ହେଲେ। ଏବଂ ପାରଳାଖେମୁଣ୍ଡି 'ଗଜପତି' ବୋଧହୁଏ ଗଙ୍ଗବଂଶର ଧାରା ବହନ କରନ୍ତି।

– ଏହାହିଁ କ'ଣ 'ଗଜପତି' ଶବ୍ଦର ଅର୍ଥ ବୋଲି ଗ୍ରହଣ କରାଯିବ? ତାଙ୍କର ଓଢ଼ଣାଘେରା ମୁହଁରେ ପୁଣି ବ୍ୟାକୁଳତା ପ୍ରକାଶ ପାଇଲା। ଅନାମ ଜଣକ ଏଥର ଖଣ୍ଡେ ସିଗାରେଟ୍ ଧରାଇଲେ।

– ଅନ୍ୟ ଏକ ପ୍ରକାରେ ଏହାର ବ୍ୟାଖ୍ୟା ମଧ୍ୟ କରାଯାଇ ପାରେ। 'ଗଜପତି'ର ଅର୍ଥ ସିଂହ ଏବଂ ଓଡ଼ିଶାର ବହୁ ମନ୍ଦିରରେ ହାତୀ ଉପରେ ସିଂହ ମାଡ଼ି ବସିଥିବାର ଶିଳ୍ପକଳା ଆପଣ ଦେଖିଥିବେ। ସିଂହ ଦୁର୍ଗାଙ୍କ ବାହନ। ଅର୍ଥାତ୍ ସିଂହ ଶକ୍ତି ପୂଜାର ପ୍ରତୀକ। ବୌଦ୍ଧ ବଜ୍ରଯାନ ଧୀରେ ଧୀରେ ଦେବୀ ଆରାଧନାରେ ପର୍ଯ୍ୟବସିତ ହେଲା। ଏହା ଦେବୀ ଆରାଧନାରେ ବଳୀ ପ୍ରଥା, ଯନ୍ତ୍ର, ତନ୍ତ୍ର ଓ ମନ୍ତ୍ରର ପ୍ରୟୋଗ ମଧ୍ୟ ବହୁତ ହେଲା। ଜଗନ୍ନାଥ ମନ୍ଦିରରେ ଏକ ସମୟରେ ବଳୀ ମଧ୍ୟ ପଡୁଥିଲା ଅଥବା ତନ୍ତ୍ର ମତରେ ପୂଜା ହେଉଥିଲା। ସିରାତ୍-ଇ-ଫରୋଜ ସାହର ଲେଖକ ୧୩୬୦ ଖ୍ରୀଷ୍ଟାବ୍ଦରେ ଶ୍ରୀମନ୍ଦିର ବିଷୟରେ ବର୍ଣ୍ଣନା କରିବାକୁ ଯାଇ ଲେଖନ୍ତି :–

"Troops of the followers of the female Devil Sanyasins who are called Devadasis; and garrulous persons who are called Bhurja (Bairagi?) squat on the ground and had the people astray. Some shed their own blood, like animals intended for sacrifice, in front of the deity, some attire the limbs of their body with the robe of amputations (slice them off). Some fling themselves from the top of an eminence into a remote distance. Some drown themselves into the deep sea."

ଏହାଥିଲା ଏକ ବିଜାତୀୟ ସଂସ୍କୃତିର ଆମ ସମାଜ ଉପରେ ଶତ୍ରୁ ଭାବାପନ୍ନ ଭିନ୍ନଦୃଷ୍ଟି। କିନ୍ତୁ ୧୩୬୦ ଖ୍ରୀଷ୍ଟାବ୍ଦ ବେଳକୁ ଯେ ଓଡ଼ିଶାରେ ତନ୍ତ୍ରପୂଜା ପ୍ରାଧାନ୍ୟ ଲାଭ କରିଥିଲା ଏଥିରେ ସନ୍ଦେହ ନାହିଁ। ଦଶ ମହାବିଦ୍ୟା ଏବଂ ସେ ବିଦ୍ୟାର ଠାକୁରାଣୀମାନେ, ସମସ୍ତଙ୍କ ମୂଳଉତ୍ସ ବୌଦ୍ଧ ଧର୍ମ। ହାତୀ ଉପରେ ସିଂହ ପ୍ରତୀକକୁ କେହି କେହି ବୌଦ୍ଧ

ଧର୍ମ ଉପରେ ବ୍ରାହ୍ମଣ୍ୟ ଧର୍ମର ବିଜୟ ବୋଲି ବ୍ୟାଖ୍ୟା କରିଥା'ନ୍ତି। କିନ୍ତୁ ବାସ୍ତବରେ ଏହା ସତ୍ୟ ନୁହେଁ। ବରଂ ଅହିଂସା ବୌଦ୍ଧଧର୍ମର ପ୍ରତୀକ 'ଗଜ' ଉପରେ ଶକ୍ତିର ପ୍ରତୀକ ସିଂହ ବଜ୍ରଯାନୀ ତନ୍ତ୍ରର ପରିଚାୟକ। ବଜ୍ରଯାନ ଓ ସହଜଯାନ ଓଡ଼ିଆଙ୍କ କୀର୍ତ୍ତି ବୋଲି ହୁଏତ ଏପରି ଏକ ପ୍ରତୀକ ଓଡ଼ିଶାର ଶିଳ୍ପ କଳାରେ ସ୍ଥାନ ପାଇଛି। ତେଣୁ 'ଗଜପତି' ବିରୁଦ ବ୍ୟବହାର କରି ଓଡ଼ିଶାର ରାଜା ନିଜକୁ ଏପରି ଏକ ଧର୍ମଧାରଣାର ନେତୃତ୍ୱ ନେଉଥିବାର ବା ଏପରି ଧର୍ମ ବିଶ୍ୱାସୀ ବୋଲି ସୂଚିତ କରିବା ପାଇଁ ବ୍ୟବହାର କରିଥିବାର ମନେହୁଏ।

ଅନାମ ଜଣକ ସିଗାରେଟ୍‌ରୁ କେଇପୁଳା ଟାଣି ନେଇ ଦୁଃଖରେ କହିଲେ – ଓଡ଼ିଶା ଉପରେ ଗବେଷଣା ଏଠି କାହିଁ? ପ୍ରଭାତ ମୁଖାର୍ଜୀ ତାଙ୍କ ପୁସ୍ତିକା 'Gajapati kings of Orissa'ରେ ମଧ୍ୟ ଏ ଶବ୍ଦର ବ୍ୟାଖ୍ୟା କରି ନାହାନ୍ତି। ମନ୍ମଥ ନାଥ ଦାସ ଅଶୋକଙ୍କ ଯୁଦ୍ଧକୁ ନେଇ ସିନେମାର ସ୍ୱପ୍ନ ଦେଖନ୍ତି – କିନ୍ତୁ ତାଙ୍କ ବହି 'Glimpses of Kalinga History' 'ଗଜପତି' ଶବ୍ଦ ଉପରେ ନିରବ। 'Utkal University History of Orissa'ରେ ବି 'ଗଜପତି' ଶବ୍ଦକୁ ବ୍ୟାଖ୍ୟା କରାଯାଇନି – ଆଉ ତେବେ କାହାଠୁ ଆମେ କ'ଣ ଆଶା କରିବୁ?

କଟି ଭାଇନା ଏଥର ମୁହଁ ଖୋଲିଲେ –

– ମୁଁ କହୁ ନଥିଲି ଆଜ୍ଞା! ଓଡ଼ିଶା ଇତିହାସ ଏବେ ବି ଏକ ପ୍ରହେଳିକା। ଆମେ କେବଳ ଅନୁମାନ କରୁଛୁ ନା – ଠିକ୍ ଟା କ'ଣ କିଏ ଛାତିରେ ହାତ ରଖି କହିପାରିବ?

– ଯେଉଁ ଜାତିର ବିଧାନସଭା ଆଜି ଯାଏଁ ନିଜ ସଂସ୍କୃତିକୁ ଠିକ୍ ଭାବେ ବୁଝିନି ଅଥବା ସଂଜ୍ଞା ନିର୍ଦ୍ଧାରଣ କରିନି – ସେଠି କାହାକୁ ଆମେ କ'ଣ କହିବା?

ଅନାମ ଜଣେ ଉତ୍ତର ଦେଲେ।

– ଆମ ସଂସ୍କୃତି ବିଭାଗ, ସାହିତ୍ୟ ଏକାଡେମୀ ଓଡ଼ିଆ ସଂସ୍କୃତିର ସଂଜ୍ଞା ବା ଆଭିମୁଖ୍ୟ ଠିକ୍ କରିନି – ଫଳରେ ଓଡ଼ିଶାରେ ଗୁଡ଼ାଏ ଅପସଂସ୍କୃତି। ବିଜାତୀୟ ଚିନ୍ତା ଚେତନାର ଧାରାକୁ ଏଠି ପୁରସ୍କୃତ କରାଯାଏ – ଓଡ଼ିଆ ସଂସ୍କୃତି ନାମରେ। ଏଠି ପଇସା ଖର୍ଚ୍ଚ କରାଯାଏ ମନ୍ତ୍ରୀଙ୍କ ସଭାପତିତ୍ୱରେ ସଭା ସବୁ କରିବାକୁ – ଏପରିକି ଆଜି କାଲିର 'ଗଜପତି' ବି ଏଥିରେ ବ୍ୟବହୃତ ହେଉଛନ୍ତି ଅଜାଣତରେ।

– ମାନେ? – ଲୀନାର ବିସ୍ଫାରିତ ନେତ୍ର ତା' ଉତ୍ସୁକତା ବୁଝାଉଥିଲା।

ଅନାମ ଜଣେ ହସିଲେ।

– ମୋର ଗୋଟିଏ ଅନୁଭୂତି କୁହେ। କୋରାପୁଟରେ ଗୋଟିଏ ଜଗନ୍ନାଥ ମନ୍ଦିର ୧୯୭୧-୭୨ରୁ ଆରମ୍ଭ ହେଲା। ସେଠି ରଥଯାତ୍ରା ମଧ୍ୟ ହେଲା। ସରକାରୀ ଚାକିରୀଆଙ୍କଠୁ ଆରମ୍ଭ କରି ସ୍ଥାନୀୟ ବାସିନ୍ଦା ସମସ୍ତେ ସେଥିରେ ସହଯୋଗ କଲେ। କାଳକ୍ରମେ ଉଦ୍ୟୋକ୍ତାମାନେ ଏହି ମନ୍ଦିରର ନାମ ଶାବର ଶ୍ରୀକ୍ଷେତ୍ର ରଖିଲେ। ଜଣେ ଆଦିବାସୀ ରଥଯାତ୍ରାର ଛେରାପହଁରା କଲେ। କୋରାପୁଟକୁ ଆନ୍ଧ୍ରରେ ମିଶେଇବା ପାଇଁ ତେଲେଙ୍ଗାଙ୍କର

ପ୍ରଚେଷ୍ଟାକୁ ଏଇ ମନ୍ଦିର ମାଧ୍ୟମରେ ପ୍ରତିହତ କରି – ସେ ଅଞ୍ଚଳରେ ଓଡ଼ିଆ ଜାତୀୟତାର ପ୍ରଭାବ ଅନୁଭୂତ କରେଇବା ଦିଗରେ ଏଇ ମନ୍ଦିରର ଯଥେଷ୍ଟ ଅବଦାନ ଅଛି। ଏ କଥା ବି ସତ ଯେ ଜୟପୁରରେ ଜଗନ୍ନାଥଙ୍କ ମନ୍ଦିର ଅଛି ଏବଂ ସେଠି ମଧ୍ୟ ରଥଯାତ୍ରା ହୁଏ। ଅନ୍ୟ ସମସ୍ତ ଗଡ଼ଜାତ ରାଜାଙ୍କ ଜଗନ୍ନାଥ ମନ୍ଦିର ପରି ଜୟପୁର ରାଜାଙ୍କ ନିର୍ମିତ ଏଇ ମନ୍ଦିର ଓ ରଥ ବେଶ ପ୍ରସିଦ୍ଧ ଥିଲା କୋରାପୁଟ ଜିଲ୍ଲାରେ। ତଥାପି ଆମେ ସମସ୍ତେ ଏପରି ଏକ ପ୍ରଚେଷ୍ଟାକୁ ଅନ୍ତଃକରଣରେ ସମର୍ଥନ କରୁଥିଲୁ – ଏବେ ବି କରୁଛୁ। କିଛି ଦିନ ପରେ ସେହି ଏକ ବଡ଼ ମନ୍ଦିର ତୋଳା ହେଲା। ସେ ମନ୍ଦିରର ପ୍ରତିଷ୍ଠା ଦିବସକୁ କିନ୍ତୁ ରାଜନୈତିକ ଉଦ୍ଦେଶ୍ୟରେ ବ୍ୟବହାର କରିବା ପାଇଁ ହଠାତ୍ ଉଦ୍ୟୋକ୍ତାମାନେ ବୋଧେ ଚିନ୍ତାକରି ବସିଲେ ଏବଂ ବେଶି ଲୋକ ସମାଗମ ପାଇଁ ପୁରୀର ଗଜପତିକୁ ଆମନ୍ତ୍ରଣ କରିବା ନିହାତି ଦରକାର ହୋଇଗଲା। ସେମାନେ ଗଜପତିଙ୍କୁ ନେବା ପାଇଁ ଯେଉଁ ଦିନ କଥାଭାଷା କରିବାକୁ ଆସିଲେ ସେଦିନ ମତେ ବି ତାଙ୍କ ସାଙ୍ଗରେ ନେଇଥିଲେ। ସେଦିନର କଥୋପକଥନ ଯାହା ମୋର ମନେ ଅଛି ତା' ଆପଣଙ୍କୁ କୁହେ।

ନହରରେ ପ୍ରବେଶ କରି 'ଗଜପତି'ଙ୍କ ଡ୍ରଇଁ ରୁମ୍‌ରେ ଆମେ ବସିବାକୁ ଗଲାବେଳେ ପ୍ରଥମେ ଶ୍ରୀଯୁକ୍ତ ପଣ୍ଡା ଜଣେ ଟହଲିଆକୁ ପଚାରିଲେ –

– ଶ୍ରୀଛାମୁଁ କୋଉଠି ବସନ୍ତି ?

– ଆପଣ ଯୋଉଠି ବି ବସିଲେ କିଛି ଯାଏ ଆସେନି ଆଜ୍ଞା !

– ନାଁ ନାଁ – ମହାରାଜାଙ୍କର ନିଜସ୍ୱ ଆସନ କିଛି ତ ଥିବ ! କାଳେ ଆମେ ଭୁଲରେ ବସିପଡ଼ିବୁ ସେଇଥି ପାଇଁ ପଚାରୁଛି।

– ନାଇଁ, ସେମିତି କିଛି ନାହିଁ।

ସ୍ୱାଧୀନତାର ଏତେ ବର୍ଷ ପରେ ବି ଲୋକଙ୍କର ଏପରି ରାଜାପ୍ରୀତି ଦେଖି ମୁଁ ଟିକେ ଆମୋଦିତ ହେଲି। ବଖରାଟିରେ ଧିମା ଆଲୁଅ ଥିଲା। ଚନ୍ଦନ ଯାତ୍ରା ସମୟ – କିନ୍ତୁ ବେଶି ଗରମ ଲାଗୁ ନଥିଲା ସେଠି। ଗଜପତି ବାହାରେ ବସିଥିଲେ ତାଙ୍କର ଜଣେ ପାରିଷଦଙ୍କ ସହ। ପାରିଷଦ ଥିଲେ ଜଣେ ଅବସର ପ୍ରାପ୍ତ ପୁଲିସ୍ ଅଫିସର।

ରାଜାଙ୍କୁ ଖବର ଦିଆହେଲା ଏବଂ ଉଭୟେ ଡ୍ରଇଁ ରୁମ୍‌ରେ ବିଜେ ହେଲେ। ଶ୍ରୀଯୁକ୍ତ ପଣ୍ଡା ଯୋଡ଼ହସ୍ତରେ ଉଠି ଅଭିବାଦନ ଜଣେଇଲେ। ମହାରାଜା ଆସ୍ଥାନ ଗ୍ରହଣ କଲେ ଏକ ସୋଫାରେ। ତାଙ୍କର ଠିକ୍ ସାମ୍ନାରେ ଆମେ ଥିଲୁ। ଏଥର ଶ୍ରୀଯୁକ୍ତ ପଣ୍ଡା ଆରମ୍ଭ କଲେ 'ତାଙ୍କ ଘର କଳାହାଣ୍ଡି ଏବଂ ସେ ଜଣେ ପୁରୁଷାନୁକ୍ରମିକ କଳାହାଣ୍ଡି ରାଜାଙ୍କର ହୀତୈଶୀ। ପ୍ରତାପ କେଶରୀ ଦେଓ ରାଜାଙ୍କର ଜୋଇଁ। ତେଣୁ ତାଙ୍କର ପୁରୀ ରାଜବଂଶ ପ୍ରତି ପ୍ରଗାଢ଼ ଅନୁରକ୍ତି . . ." ଇତ୍ୟାଦି। ତା'ପରେ ଆରମ୍ଭ ହେଲା ଶାବର ଶ୍ରୀକ୍ଷେତ୍ରର ପ୍ରତିଷ୍ଠା ଉତ୍ସବ ବିଷୟ। ଶ୍ରୀଯୁକ୍ତ ପଣ୍ଡା ଅନୁରୋଧ କଲେ ଯେ ଜଗନ୍ନାଥ ମନ୍ଦିରର ପରଦା ଉଠେଇ ରାଜା ଏକ ପ୍ରଦୀପ ପ୍ରଜ୍ୱଳିତ କରି ତାଙ୍କ ଉନ୍ମୋଚନ କାର୍ଯ୍ୟ

ସମାପନ କରିବେ।

ଅବସର ପ୍ରାପ୍ତ ପୁଲିସ ଅଫିସର କହିଲେ ଯେ ଗଜପତି କୌଣସି ମନ୍ଦିର ପ୍ରତିଷ୍ଠା କରିବାକୁ ଗଲେ ଯାହା ଯାହା ଆବଶ୍ୟକ ସେକଥା ସେ ଚିଠି ମାଧ୍ୟମରେ ଉଦ୍ୟୋକ୍ତାମାନଙ୍କୁ ଜଣେଇ ଦେଇଛନ୍ତି। ସେଥିରେ ସେ ଲେଖିଛନ୍ତି ଗଜପତିଙ୍କୁ ନିମନ୍ତ୍ରଣ କଲେ ତାଙ୍କ ପରମ୍ପରା ଅନୁସାରେ ଆମନ୍ତ୍ରଣ କରିବା ଉଚିତ୍ ଏବଂ ମନ୍ଦିର ପ୍ରତିଷ୍ଠାର କର୍ତ୍ତାଭାବେ ସେ କାର୍ଯ୍ୟ କରିବା ଉଚିତ୍। ଏଥିରେ ଶ୍ରୀଯୁକ୍ତ ପଣ୍ଡା କହିଲେ –

– ନୂତନ ମନ୍ଦିରରେ ଖାଲି ବିଗ୍ରହ ବସିବେ ଆଜ୍ଞା! ନୋହିଲେ ଜଗନ୍ନାଥ ତ ପ୍ରତିଷ୍ଠା ହେଇ ପୂଜା ପାଉଛନ୍ତି!

– ଆମ୍ଭର କିନ୍ତୁ ଯାହା ପରମ୍ପରା ସେଥିରୁ ତ ଆମ୍ଭେ ଅଲଗା ହେଇ ନପାରୁ! – ଗଜପତି ମୁହଁ ଖୋଲିଲେ।

– ନାଇଁ ଆଜ୍ଞା! ମୁଁ କେବେ ସେ କଥା କହିବି ନାହିଁ। ଆମେମାନେ ପୁରା ପରମ୍ପରାବାଦୀ ଆଜ୍ଞା! ମତେ କହିବା ହୁଅନ୍ତୁ କ'ଣ କରିବା ଉଚିତ୍ –

– ରାଜଗୁରୁଙ୍କୁ ଡାକ! – ଗଜପତିଙ୍କ ଆଦେଶ।

ରାଜଗୁରୁ ଆସିଲେ। ଗଜପତିଙ୍କ ତରଫରୁ ଏକ ଲମ୍ବା ଫର୍ଦ୍ଦ ଦେଲେ। ପ୍ରଥମେ ରାଜାଙ୍କୁ ଆମନ୍ତ୍ରଣ କରିବା ପାଇଁ ଏକ ରୂପା ଥାଳିରେ ବ୍ରହ୍ମପୁରୀ ପାଟ ଯୋଡ଼, ୪ଟି ରୂପା ଗିନାରେ – ଅଗୁରୁ, ଚନ୍ଦନ ଇତ୍ୟାଦି ସହ କେଇଟି ସ୍ୱର୍ଣ୍ଣମୁଦ୍ରା ଦରକାର। ରାଜା ନିମନ୍ତ୍ରଣ ଗ୍ରହଣ କଲେ ତାଙ୍କ ସହ ରାଜଗୁରୁ, କାହାଳିଆ, ପତ୍ରୀ ଇତ୍ୟାଦି ୫ଜଣ ଯିବେ। ରାଜାଙ୍କ ପାଇଁ ଅଲଗା କାର୍ ଏବଂ ଅନ୍ୟ ସଭିଙ୍କ ପାଇଁ ଅଲଗା ଗାଡ଼ି। କୋରାପୁଟରେ ପହଞ୍ଚିବା ପରେ ତାଙ୍କର 'ମଙ୍ଗଳାଚରଣ' ପାଇଁ ଯାହା ଆବଶ୍ୟକ ତା ବି ଏକ ବଡ଼ ଫର୍ଦ୍ଦ। ରାଜାଙ୍କ ସହ ଯାଇଥିବା ବ୍ୟକ୍ତିବିଶେଷଙ୍କୁ ବିଦାକି ଓ ମଠା ବା ଲୁଗା ଇତ୍ୟାଦି ଦେବାକୁ ହେବ। ମନ୍ଦିର ପ୍ରତିଷ୍ଠା କାର୍ଯ୍ୟ ରାଜଗୁରୁଙ୍କ ଉପଦେଶ ଅନୁସାରେ ହେବ ଏବଂ ସେଥିଲାଗି ଆଗରୁ ଯେଉଁ ହୋମ ହେବ, ସେଥିରେ କର୍ତ୍ତା ହେବାକୁ ରାଜା ଗୁଆ ଦେଇ ଦେବେ . . . ଇତ୍ୟାଦି ଇତ୍ୟାଦି। ଶ୍ରୀଯୁକ୍ତ ପଣ୍ଡା ସବୁଥିରେ ସମ୍ମତି ପ୍ରଦାନ କଲେ। ଉତ୍ତେଜନାରେ ମୁଁ ପାଣି ମାଗିଲି। ସେଠି ମୁଁ ଥିଲି ଜଣେ ନିରବ ଶ୍ରୋତା। ଥଣ୍ଡାପାଣି ପିଉ ପିଉ ଭାବୁଥିଲି – ଏ ସମୁଦାୟ ଖର୍ଚ୍ଚ ନକରି ଯଦି ସେଇ ପଇସାରେ ଆଦିବାସୀଙ୍କ ଉଦ୍ଦେଶ୍ୟରେ ଗୋଟେ ଦାତବ୍ୟ ଆୟୁର୍ବେଦିକ ବା ହୋମିଓପ୍ୟାଥିକ ଔଷଧାଳୟ ଖୋଲା ଯାଆନ୍ତା – ତା' ହେଲେ ଲୋକେ କେତେ ଉପକୃତ ହୁଅନ୍ତେ! ମୁଁ ଦେଖିଛି ଆଦିବାସୀମାନେ ଡାକ୍ତରଖାନାରେ ଜାଗା ନପାଇ କିପରି କୁକୁର ପରି ଗଛମୂଳେ ନ ହେଲେ ଡାକ୍ତରଖାନା ବାରଣ୍ଡାରେ ପଡ଼ିଥାଆନ୍ତି। ସେମାନଙ୍କ ପାଇଁ କିଛି ଅଧିକା ବେଡ୍ କରାଯାଇ ପାରିଥାନ୍ତା! ଶ୍ରୀଯୁକ୍ତ ପଣ୍ଡାଙ୍କୁ ସେଠି ନିରୁତ୍ସାହ ନକରି ବାହାରକୁ ଆସିବା ପରେ ମୁଁ ତାଙ୍କୁ ଏକଥା କହିଲି। ପଣ୍ଡିତ ସଦାଶିବ ରଥଶର୍ମାଙ୍କୁ ଚନ୍ଦନ ଚକଡ଼ାରେ ମଧ୍ୟ କହିଲି ଯେ – ଏହାଦ୍ୱାରା 'ଗଜପତି' ବିରୁଦର

ଅବମାନନା ହେବ। ସେମାନେ ମୋତେ ଆଶ୍ଚର୍ଯ୍ୟାନ୍ୱିତ ଭାବେ – ଏକ 'କବାବ୍ ମେ ହଡ୍‌ଡି' ଭାବିଲେ – ମୋର କିନ୍ତୁ କହିବାର ଥିଲା – (୧) ପୁରୀର ଗଜପତି କୋଉ ଜଗନ୍ନାଥ ମନ୍ଦିର କୋଉଠିବି ପ୍ରତିଷ୍ଠା କରିବାକୁ ଯିବାର ଦୃଷ୍ଟାନ୍ତ ମାଦଳା ପାଞ୍ଜିରେ ନାହିଁ। ଓଡ଼ିଶାର ସବୁ ଗଡ଼ଜାତରେ ଜଗନ୍ନାଥ ମନ୍ଦିର ଅଛି ଏବଂ ତା'ର ପ୍ରତିଷ୍ଠା ଉତ୍ସବରେ ଗଜପତି କର୍ତ୍ତା ହିସାବରେ ଯିବାର ଆପଣ ଜାଣିଛନ୍ତି କି? ଯଦି ଜାଣନ୍ତି ତା'ହେଲେ ସିନା ଏ ହିସାବ ଫର୍ଦ୍ଦ ଠିକ୍ – ନୋହିଲେ ତ ବର୍ତ୍ତମାନର 'ଗଜପତି' ପରମ୍ପରା ଭାଙ୍ଗୁଛନ୍ତି ଅଥବା ଏକ ନୂତନ ପରମ୍ପରା ସୃଷ୍ଟି କରୁଛନ୍ତି। (୨) ପୁରୀ ଜଗନ୍ନାଥଙ୍କ ଛଡ଼ା ଅନ୍ୟ କୌଣସି ଜଗନ୍ନାଥଙ୍କ ଦାରୁଗର୍ଭରେ ସେହି 'ଅଜଣା ପଦାର୍ଥ'ଟି ନାହିଁ – ଯାହା ନବକଳେବରରେ ବଦଳା ହୁଏ। ତେଣୁ ଗର୍ଭସ୍ଥ ବ୍ରହ୍ମ ବିନା ପ୍ରତ୍ୟେକ ମୂର୍ତ୍ତି ଜଗନ୍ନାଥଙ୍କ ପ୍ରତୀକ ହୋଇପାରନ୍ତି – କିନ୍ତୁ ଜଗନ୍ନାଥ ନୁହନ୍ତି। ତା'ହେଲେ 'ସୁଦର୍ଶନ' ଦୋକାନରେ ସଜା ହେଇଥିବା ଜଗନ୍ନାଥଙ୍କୁ ପ୍ରତିଷ୍ଠା କରବା ପାଇଁ ଯଦି ସୁଦର୍ଶନ ସାହୁ ହିସାବ ଫର୍ଦ୍ଦ ପୂରଣ କରେ, ତା'ହେଲେ କ'ଣ ଗଜପତି ସେଠାକୁ ମଧ୍ୟ ଯିବେ? କେଉଁ ଜଗନ୍ନାଥଙ୍କ ପ୍ରତିଷ୍ଠା ପାଇଁ ଗଜପତି ତାଙ୍କ ପରମ୍ପରା ଭାଙ୍ଗୁଛନ୍ତି? (୩) ପ୍ରତିଷ୍ଠା ଉତ୍ସବରେ ପ୍ରଥମେ କେତେ ଦିନ ଯଦି 'ଗଜପତି'ଙ୍କ ଗୁଆ ପ୍ରତିନିଧିତ୍ୱ କରିପାରେ ତା'ହେଲେ ସେହି ଗୁଆ ବାହକ କର୍ତ୍ତା ହିସାବରେ କାର୍ଯ୍ୟକରି ଉଦ୍‌ଯାପନର ପୂର୍ଣ୍ଣାହୂତି ମଧ୍ୟ କରିପାରିବେ ବୋଲି ମୋର ବିଶ୍ୱାସ। ତା'ହେଲେ ଏତେ ଟଙ୍କା ଖର୍ଚ୍ଚ କରି ଗଜପତିଙ୍କୁ ନେବାର ଆବଶ୍ୟକତା କ'ଣ? ବୋଧହୁଏ ଆଦିବାସୀ ଅଧ୍ୟୁଷିତ ଅଞ୍ଚଳରେ 'ଗଜପତି'ଙ୍କ ନାମ ପ୍ରଚାର କରି ବହୁ ଲୋକ ସମାଗମ କରେଇ – ତା' ଦ୍ୱାରା ରାଜନୈତିକ ପୃଷ୍ଠପୋଷକମାନେ ବାହାବା ନେବାର ଏ ଏକ ପ୍ରଚ୍ଛନ୍ନ ଉଦ୍ୟମ। 'ଗଜପତି'ଙ୍କୁ ସମସ୍ତ ସମ୍ମାନ ଜଣେଇ ମୁଁ କହିପାରେ ସେ ନିଜ ବଂଶ ପରମ୍ପରା ବିଷୟରେ ବୋଧେ ବେଶି ଜ୍ଞାନ ଆହରଣ କରିନାହାନ୍ତି। ନୋହିଲେ ଏପରି ପରମ୍ପରାଜ୍ଞାନହୀନ ଉପଦେଷ୍ଟାଙ୍କର ଉପଦେଶରେ ସେ ଭାସି ଯାଉ ନଥାନ୍ତେ।

ପଣ୍ଡିତେ ମୋ ଉପରେ ବିରକ୍ତ ହେଲେ। ମୁଁ କୁଆଡ଼େ ଭଲ କାମରେ ଖଳବ ପୂରଉଛି! ଓଡ଼ିଆ ସଂସ୍କୃତିର ଜଣେ ବଡ଼ପଣ୍ଡାଙ୍କ ବିଚାର ବୁଦ୍ଧିରେ ମୁଁ ମର୍ମାହତ ହେଲି। ଦୁଃଖ ଲାଗିଲା। ଯେଉଁମାନେ ଜଗନ୍ନାଥଙ୍କୁ ଜୀବିକା କରିଛନ୍ତି – ତାଙ୍କ ପେଟପାଟଣାରେ ପ୍ରତିବନ୍ଧକ ଭାବେ ଛିଡ଼ା ନ ହେବା ପାଇଁ ଶ୍ରୀଯୁକ୍ତ ପଣ୍ଡାଙ୍କ ଆମନ୍ତ୍ରଣ ରକ୍ଷାକରି କୋରାପୁଟ ଯାଇ ପାରିବି ନାହିଁ ବୋଲି ଜଣେଇ, ନରେନ୍ଦ୍ର ପାଣିରେ ଦୁଇଠୋପା ଲୁହ ମିଶେଇ – ଘରକୁ ଫେରିଲି। 'ଜଗନ୍ନାଥଙ୍କର ଜୟ ହେଉ' – କେବଳ ଏତିକି କହିବି।

ଲୀନା ଏତେବେଳଯାଏଁ ନୀରବରେ ସବୁ ଶୁଣୁଥିଲା। ଅନାମ ଜଣଙ୍କର ଅଶ୍ଳୀଳ ବକ୍ତବ୍ୟ ତାକୁ ବି ମର୍ମାହତ କରିଥିଲା। ମୁଁ ତା ଆଖିର ଭାବ ବ୍ୟଞ୍ଜନାରୁ ବେଶ୍ ବୁଝି ପାରୁଥିଲି। ସେ ମତେ ଚୁମୁଟିଲା ଉଠିବା ପାଇଁ। ଲୀନା ଧୀରେ ଧୀରେ ମୋର ଖୁବ୍ ନିଜର ବୋଲି ବ୍ୟବହାର କରୁଛି। ସତେ ଯେପରି ବାହାର ଲୋକଙ୍କୁ ସେ ଜଣେଇ ଦେବାକୁ

ଚାହେଁନି ଯେ – ଆଜି ମାତ୍ର ତା'ର ମୋର ସଂପର୍କ। ଶୀତର ବାହାନା ନେଇ ସେ ଓଢ଼ଣା ପକେଇଛି – ଏକ ବିବାହିତା ସ୍ତ୍ରୀ ପରି ମନେ ହେଉଛି। ଅନାମ ବନ୍ଧୁ ବିଦାୟ ମାଗି ଚାଲିଗଲେ। ହାତ ଘଡ଼ିକୁ ଚାହିଁଲି ରାତି ୧୧ଟା ହେଲାଣି। ବଡ଼ଦାଣ୍ଡରେ ତଥାପି ଗହଳି ଅଛି। ପଢ଼ିଆରୀଏ ବି ଚାଲିଗଲେ। ଆମେ ଦୁହେଁ ତା'ପରେ ଏକା ଏକା। ମୁଁ ଲୀନାକୁ ନେଇ ସିଂହଦ୍ୱାରଆଡ଼େ ଆଗେଇବାକୁ ଆରମ୍ଭ କରୁ କରୁ ପଚାରିଲି –

– ଓଢ଼ଣା ଦେଲେ ଶୀତ କମିଯାଏ, ନା?

– ଶୀତଠୁ ଆଉ ଗୋଟେ ବଡ଼ ସୁରକ୍ଷା ମିଳେ –

– କ'ଣ?

– ଲୋକେ ମତେ ଆପଣଙ୍କ ଧର୍ମପତ୍ନୀ ଭାବିଲେ ଗୁଡ଼ାଏ ଅଦରକାରି ଅସୁବିଧା ହେବନି। – ଲୀନା ହସିଲା। ମୁଁ ଲୀନାର ସ୍ପଷ୍ଟ କଥାରେ ଚକିତ ହେଇ ମୁହଁ ବୁଲେଇଲି। କରର କ୍ୟାବିନ୍ ଦୋକାନ ସବୁ ଗୋଟି ଗୋଟି ବନ୍ଦ ହେଇ ଆସୁଛି। ତା' ସହ ବଡ଼ଦାଣ୍ଡରେ ଆଲୁଅ ମଧ୍ୟ ଧିମା ହେଇଯାଉଛି। ପଛରେ ଧୂଳି ଓ କୁହୁଡ଼ି ମିଶି କିପରି ସବୁ ଅନ୍ଧାରୁଆ। ଅରୁଣ ସ୍ତମ୍ଭ ଯେତିକି ନିକଟେଇ ଆସୁଛି – ସେତିକି ଯୋର୍‌ରେ ଶୁଭୁଛି – "ତ୍ରିନାଥ ତ୍ରିନାଥ ତ୍ରିନାଥ। ଛୋଟା ଭାବଇ ହୃଦଗତ" ଏବଂ ତା' ସହ ପ୍ରବଳ ଖଞ୍ଜଣି ମାଡ଼। ଗଞ୍ଜେଇ ସଜା ହେଇ ଥୁଆ ହେଇଛି କାଠ ପିଢ଼ାକୁ ଆଉଜି। କାଠ ପିଢ଼ାରେ ପାନ ଗୁଆ ଓ କିଛି ଭୋଗ। ତ୍ରିନାଥଙ୍କର ଗୋଟିଏ ବହୁ ଚନ୍ଦନ ମଣ୍ଡିତ ଛୋଟ ଫଟୋ। ଗାଇଲାବାଲା କଣ୍ଠ ଥରେଇ ଏକ ବିଚିତ୍ର ଭଙ୍ଗୀରେ ମୁଣ୍ଡ ହଲେଇ ନାକ କାନ କମ୍ପେଇ କିପରି ଏକ ଅସ୍ପଷ୍ଟ ଉଚ୍ଚାରଣ କରୁଛି। ଲହର ଶେଷ ହେଉନି ଗୀତରେ। ବହୁଲୋକ ପାଳି ଧରୁଛନ୍ତି ଏବଂ ଅପେକ୍ଷାରେ ଅଛନ୍ତି କେତେବେଳେ – "ପ୍ରସାଦ ବାଣ୍ଟିଣ ଖାଇବ, ଅଳ୍ପ ବହୁତ ନ କହିବ" – ସମୟ ଆସିବ।

– ପ୍ରୋଲେଟାରିଏଟ୍‌ଙ୍କ କବି ଭଗବତୀ ପାଣିଗ୍ରାହୀ, ଶଚ୍ଚୀବାବୁ, ଅନନ୍ତ ପଟ୍ଟନାୟକ କି ରବି ସିଂ ନୁହନ୍ତି – ଲୀନା! ପ୍ରୋଲେଟାରିଏଟ୍‌ଙ୍କ ବାସ୍ତବ ଓଡ଼ିଆ କବି ହେଉଛନ୍ତି ବିପ୍ରଦାସ – ତ୍ରିନାଥ ମେଳାର ଲେଖକ।

– ମୁଁ ପଢ଼ିଥିଲି ଗୋଟେ କୋଉ ପ୍ରବନ୍ଧରେ ଜଣେ ସମାଲୋଚକ ଲେଖିଥିଲେ।

– ବିପ୍ଳବ ପାଇଁ ଏହିପରି କିଛି ଲେଖିବା ଦରକାର ଏବଂ ତା' ସହ କିଛି ଅନୁଷ୍ଠାନ ସୃଷ୍ଟି କରିବା ଉଚିତ୍।

– ତେବେ ଗଞ୍ଜେଇ?

– ସେ ତ ତମ ଭାଷାରେ – 'ଡିକାଡେନ୍‌ସ'।

॥ ୧ ॥

'ଗୋଟେ ଜାତିର ଐତିହ୍ୟ ଓ ସଂସ୍କୃତି ବିଷୟରେ ଯଦି ସେଇଜାତି ପରାନ୍ମୁଖ ହୁଏ – ତାକୁ ଅନ୍ୟଙ୍କର ପଦଦଳିତ ଦାସ ହେବା ପାଇଁ ପଥ ସୁଗମ କରେ। ନିଜର ସ୍ୱାଭିମାନ ନଥିଲେ – ସେ ଜାତି ଚିରର ବୁଦ୍ଧିଶୂନ୍ୟ ମେଣ୍ଢାପଲରେ ପରିଣତ ହୁଏ। ଆମ ଭିଟାମାଟି ତଳେ କେତେ ଯେ ସୁନାହାଣ୍ଡି ଭର୍ତ୍ତି ହୋଇଅଛି – ତାକୁ କାଢ଼ିଆଣିବାର ପରିପ୍ରେକ୍ଷୀରେ ବ୍ୟବହାର କରିପାରିଲେ ସିନା – ନିଜକୁ, ଜାତିକୁ ଏବଂ ଆମ ସଭିଙ୍କର ଭବିଷ୍ୟତକୁ ମହନୀୟ କରିବା!' – ଜାତିର ଆତ୍ମାବିଷ୍କାରର ପଥ ବାଛୁବାଛୁ ଏଇ ପଥ ହୋଇଛି ବରଣୀୟ। ହେଲେ ଏ ପଥ କେବେ ବି ତ ସହଜ, ସୁଗମ ନୁହେଁ! ଏ ପଥ ପାରମ୍ପରିକ ଧାରଣାକୁ ଆଘାତକରେ, ପ୍ରଚଳିତ ବିଶ୍ୱାସରେ ଅନାସ୍ଥା ଆଣେ, ଚଳନୀୟ ପ୍ରଥା ଗୁଡ଼ିକ ସଂପର୍କରେ ପ୍ରଶ୍ନ ଉଠାଏ।

ଏପରି ହେଲେ ପଥ ତ ହେବ ବନ୍ଧୁର, ହେବ ଦୁର୍ଗମ! ଜାତୀୟ ଅସ୍ମିତା ପାଇଁ ଯିଏ ସଚେତନ, ସାଂସ୍କୃତିକ ମାନ୍ୟତା ଗୁଡ଼ିକର ପରୀକ୍ଷଣରେ ଯିଏ ଦୁଃସାହସୀ; ଦର୍ଶନ, ସାହିତ୍ୟ, ଧର୍ମର ଗଭୀରତାକୁ ଯିବାରେ ଯେ ତତ୍ପର, ତାକୁ ପଥ-ଦୁର୍ଗମତାତ ବାଧା ଦେଇନପାରେ! ପଥ ଦୁର୍ଗମତାର ଆହ୍ୱାନକୁ ସ୍ୱୀକାରକରି ଯିଏ ନିଜ ଜାତିର ଅସ୍ମିତାର ଅନ୍ୱେଷଣ କରିବାର ସୁଦୃଢ଼ ମନ ଓ ଏକାଗ୍ର ଦୃଷ୍ଟି ରଖିଥାଏ, ସେଇ କୁମାର ମହାନ୍ତି (୧.୧.୧୯୪୧ – ୧୯.୧୨.୧୯୯୫) ଏକାତ ଲେଖିପାରେ 'ଧନ୍ୟ ସେହୁ ପୁରୀ'।

ଅନାମ ଆନ୍ଦୋଳନର ଏ ପ୍ରବକ୍ତାଙ୍କ ଏଇ ଲେଖାଟି ୧୯୭୬ ମସିହା ଜୁଲାଇ ମାସରୁ 'ନବରବି'ରେ ଧାରାବାହିକ ପ୍ରଥମେ ପ୍ରକାଶିତ ହୋଇଥିଲା। ଏହାପରେ ଅଗଷ୍ଟ, ସେପ୍ଟେମ୍ବର – ଅକ୍ଟୋବର ମିଳିତ ସଂଖ୍ୟା, ନଭେମ୍ବର ତଥା ୧୯୭୭ ମସିହା ଫେବୃଆରୀ – ମାର୍ଚ୍ଚ ସଂଖ୍ୟାରେ ଦ୍ୱିତୀୟରୁ ପଞ୍ଚମ ଅଂଶ ହୋଇଥିଲା ମୁଦ୍ରିତ। କିଛି ମାସର ବିରତି ପରେ ଅନାମ ଗୋଷ୍ଠୀର ପତ୍ରିକା 'ଅନାମ'ରେ ପୁଣି ଏହାର କେଇଟି ଅଂଶ ପ୍ରକାଶିତ ହୋଇଥିଲା। ତେବେ ଲେଖାଟି ଅସଂପୂର୍ଣ୍ଣ।

ଏହାର ପ୍ରଥମ ଅଂଶର ପ୍ରକାଶନ ବେଳେ ନବରବିର ସଂପାଦକ ଲେଖିଥିଲେ, '...ଅଭିନବ ଏ ପ୍ରଚେଷ୍ଟା ଓଡ଼ିଆ ସଂସ୍କୃତି ତଥା ଓଡ଼ିଆ ଜନଜୀବନର ତାତ୍ତ୍ୱିକ ତଥା ଦାର୍ଶନିକ ଦୃଷ୍ଟିଭଙ୍ଗୀକୁ ସର୍ବସାଧାରଣଙ୍କ ବୋଧଗମ୍ୟ କରେଇବାର ଉଦ୍ଦେଶ୍ୟରେ ରଚିତ।' ଗୋଟିଏ ଜାତିର ସଂସ୍କୃତି; ନୀଳକଣ୍ଠଙ୍କୁ ମନେପକାଇ କହିହବ ଯେ ଜାତିର ଦୃଷ୍ଟିଭଙ୍ଗୀ, ଜୀବନଧାରା ଆଉ ଭାବନାର ଅମାପ ସ୍ଫୁରଣ ନେଇ ଚିହ୍ନିତ ହୋଇଥାଏ। ଯାହାକୁ ଋହାଣି, ଚଳଣି ଓ ଚମକ ଭାବେ ସେ କରିଥିଲେ ଆଖ୍ୟାୟିତ। 'ଧନ୍ୟ ସେହୁ ପୁରୀ' ଏଇ ସମୁଦାୟକୁ ଆଗୁଳି ଧରି ନିଜଜାତୀୟ ପରିଚୟକୁ ଖୋଜିବାର ଚେଷ୍ଟା କରିଚି। ତେବେ ଏଇ ଆତ୍ମଅନ୍ୱେଷଣ ହୋଇଚି ଶୁଷ୍କ ଦର୍ଶନଚର୍ଚ୍ଚା ଓ ତାତ୍ତ୍ୱିକତାରେ ନୁହେଁ - ରସାଳ କାହାଣୀ ଛଳରେ।

ଗୋଟିଏ ପୁରୀଗାମୀ ବସ୍ ଯାତ୍ରାରୁ ଏ କାହାଣୀ ଆରମ୍ଭ। ସେ ଯାତ୍ରାରେ ପାରମ୍ପରିକ ବିଶ୍ୱାସ ଓ ଧାରଣାର ଅନୁପନ୍ଥୀମାନେ  ଥିବାବେଳେ ଥିଲେ ମଧ ପ୍ରତିକ୍ରିୟାଶୀଳ ଶିକ୍ଷିତ ଯୁବକୁଳ। ଅତଏବ ଚିନ୍ତାଗତ ଭିନ୍ନତା, ବାକ୍ ବିରୋଧିତାକୁ ଆବାହନ କରିବା ଥିଲା ସ୍ୱାଭାବିକ। ଏଇ ବାକ୍‌ବିରୋଧିତା ତିଆରି କରିଥାଏ ମାନସ ମନ୍ଥନ। ବସ୍ତୁ ଓ ଦୃଶ୍ୟର ବହିରଙ୍ଗ କାହାରିକୁ ଭାବପ୍ରବଣ କଲାବେଳେ କାହାରି କାହାରି ମନକୁ ଛୁଇଁ ସୁଦ୍ଧା ପାରେ ନାଇଁ। ତେବେ ଏଇ ପରମ୍ପରା ଅନୁରକ୍ତ ଓ ପ୍ରତିକ୍ରିୟାଯୁକ୍ତ ବିପରୀତ ଧର୍ମୀ ଯାତ୍ରୀଙ୍କ ଭିତରେ ଜଣେ ଥିଲେ ତଟସ୍ଥ ଶ୍ରୋତା - ସେ ଲେଖକ, ଏ ଲେଖାର ଅନ୍ୟତମ ଚରିତ୍ର! ସେ କେନ୍ଦ୍ରୀୟ ଚରିତ୍ର ଓ ସବୁକିଛି ଘଟଣା, ଘଟଣାର ତର୍ଜମା ତାଙ୍କରି ଉପସ୍ଥିତିରେ ହିଁ ଘଟିଯାଉଛି। ଅତଏବ ସେ ସବୁକିଛିର ପୂର୍ବସାକ୍ଷୀ!

ଓଡ଼ିଆ ଜାତିର ଯେତେବେଳେ ପ୍ରକୃତ ପରିଚୟ ଖୋଜା ହେଉଛି, ସେତେବେଳେ ସଂସ୍କୃତିର କେନ୍ଦ୍ର ଶଂଖକ୍ଷେତ୍ର ପୁରୀ ତ ହେବ ଅନ୍ୱେଷଣର ପ୍ରଥମ ଭୂମି! ଯେକୌଣସି ସଂସ୍କୃତି ହେଉନା କାହିଁକି ବର୍ତ୍ତମାନର ସ୍ଥିତିରେ ତାର ସ୍ୱରୂପ ନିର୍ଦ୍ଧାରଣ କେବଳ କଷ୍ଟକର ନୁହେଁ ଅନେକ ସମୟରେ ଅସମ୍ଭବ ମନେ ହେଇଥାଏ। ସେ ଉପାଦାନମାନଙ୍କରେ ଶତସହସ୍ର ବର୍ଷର ରାଜନୀତିକ ପରିବର୍ତ୍ତନ, ଐତିହାସିକ ଋପ, ଧର୍ମୀୟ ତରଙ୍ଗ - ଆଘାତ, ସାମାଜିକ ରୀତିନୀତିର ପରିବର୍ତ୍ତନ ଭିତରେ କୌଣସି ଜାତିର ସାଂସ୍କୃତିକ ଉପାଦାନ ଗୁଡ଼ିକର 'ସ୍ୱରୂପ' ଖୋଜିବା କେତୋଟି ସମ୍ଭାବନାରେ ସିନା ଅଟକିଯାଏ, ସ୍ଥିର ସିଦ୍ଧାନ୍ତରେ ପହଞ୍ଚିବା ହୁଏ ଅସମ୍ଭବ। କଥାବାର୍ତ୍ତା ଛଳରେ ଏ ଲେଖାର ଅନ୍ୟତମ ଚରିତ୍ର ଅଧ୍ୟାପକ ଫନୀ ମହାନ୍ତିଙ୍କ କଣ୍ଠରେ ଏ କଥାର ଆଭାସ ଏଇପରି ଆସିଥାଏ, "ଏ ସହର ଗୋଟେ ପ୍ରବାଦ ଓ କିମ୍ବଦନ୍ତୀର ସହର। ସବୁଟା ଉପରେ ଏତେ ଖୋଳ ଚଢ଼ିଯାଇଛି ଯେ ତା ଭିତରୁ କେଉଁଟା ଠିକ୍ କୋଉଟା ଭୁଲ କହିବା ଦୁରୂହ।" ଖାଲି ପୁରୀ ନୁହେଁ ପୃଥିବୀର ଯେକୌଣସି ସଂସ୍କୃତି ପାଇଁ ଏକଥାଟି ଯଥାର୍ଥ।

ସେଇ ଦୁରୂହତାକୁ ଆପଣେଇ ନେଇଛନ୍ତି କୁମାର ମହାନ୍ତି। ଦୁରୂହତା ନଥିଲେ ସଫଳତାର ଆନନ୍ଦ କାହିଁ, ପରିଶ୍ରମ ନଥିଲେ ପୁରସ୍କାରର ମିଠାପଣ ବା କାହିଁ? ସେ ପୁରୀଗାମୀ ବସ୍‌ଟି ପୁରୀରେ ପହଞ୍ଚିବା ପରେ ଲେଖକଙ୍କର ବଡ଼ଦାଣ୍ଡ ବୁଲିବା, ବିଭିନ୍ନ ମଠ ମନ୍ଦିର ଦେଖିବା

ଭିତରେ ତାଙ୍କର ସାଂସ୍କୃତିକ – କୌତୂହଳର ନିରାକରଣ ଲାଗି ସତେ ଯେମିତି ପୁରୀର କେହିକେହି ଲୋକ ଓ ଅନାମଗୋଷ୍ଠୀର କାହା କାହା ସହିତ ଭେଟ ଥିଲା ଅନିବାର୍ଯ୍ୟ।

॥ ୨ ॥

ଯେକୌଣସି ତୀର୍ଥକ୍ଷେତ୍ର; ସଂପୃକ୍ତ ଅଞ୍ଚଳର, ଜନତାର, ସଂସ୍କୃତିର ପରିଚାୟକ ହୋଇଥାଏ, ହେଇଥାଏ କଲଚରାଲ ମାର୍କର। ସେ କ୍ଷେତ୍ର ପୁଣି ସଂସ୍କୃତିର ନାନା ଉପାଦାନକୁ ଜନ୍ମ ଦେଉଥାଏ, ସେଗୁଡ଼ିକ ଦ୍ୱାରା ସମୃଦ୍ଧ ବି ହେଉଥାଏ। ପ୍ରତିଟି ସଂସ୍କୃତିରେ ଥିଲାପରି ପୁରୀରେ ମଧ୍ୟ ପ୍ରତିଟି ବାଲିକଣାରେ ରହିଚି କିମ୍ବଦନ୍ତୀଟିଏ! ସେମିତି ସ୍ଥାନ ଭିତ୍ତିକ, ବ୍ୟକ୍ତି ଭିତ୍ତିକ, ଦେବଦେବୀ ଭିତ୍ତିକ ନାନା କିମ୍ବଦନ୍ତୀ ପ୍ରସଙ୍ଗ କ୍ରମେ ଆସିଚି 'ଧନ୍ୟ ସେହୁ ପୁରୀ'ରେ। ଯେପରି, ନରେନ୍ଦ୍ର ପୁଷ୍କରିଣୀ ହେବାପୂର୍ବରୁ ଚନ୍ଦନଯାତ ହେଉଥିବା ହରେକୃଷ୍ଣପୁରର ପୁଷ୍କରିଣୀ, ବାଟମଙ୍ଗଳାର ପ୍ରତିଷ୍ଠାଗତ କାହାଣୀ, ଯବନ ହରିଦାସ, ଶ୍ରୀଚୈତନ୍ୟ, ଜଗନ୍ନାଥ, ବଳରାମ କି ସାଲବେଗଙ୍କ ଜୀବନର ଘଟଣାବଳୀ। ତେବେ ସେ କିମ୍ବଦନ୍ତୀ ସବୁ ଆସିଚି କାହାଣୀ ଛଳରେ, କ୍ରମେ ସେଗୁଡ଼ିକ ମଧ୍ୟରୁ କାହାରି କାହାରି ହେଇଚି ନୂଆ ବ୍ୟାଖ୍ୟା, କାହା ମାଧ୍ୟମ ଦେଇ ଇତିହାସର ନୂଆ ଅଧ୍ୟାୟଟିଏ ଦିଶିଯାଇଚି। ଅଜ୍ଞାତ ବା ଅଳ୍ପଜ୍ଞାତ ବିଷୟର ବିସ୍ତାରଣ ଭିତରେ କିମ୍ବଦନ୍ତୀ ଗୁଡ଼ିକର ଜୀବନୀ ଶକ୍ତିକୁ ପାଠକ ଅନୁଭବ କରିପାରେ। ଯବନ ହରିଦାସଙ୍କ ଶବଦାହ ପାଇଁ ଚୈତନ୍ୟ ବଡ଼ଦାଣ୍ଡରେ କୁଆଡ଼େ ଭିକ୍ଷାମାଗିଥିଲେ – ଯବନର ଯବନତ୍ୱ ଯେମିତି କୃଷ୍ଣ ଭକ୍ତିରେ ହଜିଯାଇଥିଲା। ଆସିଥିଲା ଗୋଟିଏ ପରିଚୟ – ଭକ୍ତର କି ମଣିଷର। ଏ ଭିକ୍ଷାମାଗିବାର ରୀତି ହୁଏତ ଗୌଡ଼ୀୟ ବୈଷ୍ଣବ ମାନଙ୍କ ଭାଦ୍ରବ ଶୁକ୍ଳ ଚତୁର୍ଦ୍ଦଶୀ ଦିନ ବଡ଼ଦାଣ୍ଡରେ ଏବେବି ପ୍ରଚଳିତ! ସେଇ ପ୍ରଥାର ପୃଷ୍ଠଭୂମି ଇଂଗିତ କରେ ମାନବିକତାର ଜୟଗାନ କରୁଥିବା ଏକ କିମ୍ବଦନ୍ତୀକୁ। କିନ୍ତୁ ଯେତେବେଳେ ଈର୍ଷା ଓ ସ୍ୱାର୍ଥରେ ଅନ୍ଧହୋଇ କେହି କାହାରିକୁ ବିଦଳିତ କରିବାକୁ ବସେ ସେତେବେଳେ ସେ ବିଦଳନର ଉତ୍ତର ଫେରାଏ ବଳିଆର ଭୁଜ! ସାଲବେଗଙ୍କ ଲୋକପ୍ରିୟତା, ଭକ୍ତଗହଳିରେ ଯେଉଁ "ପଣ୍ଡା, ପଣ୍ଡିତ, ଧର୍ମଗୁରୁ, ବ୍ରାହ୍ମଣ" ସେ "ପଠାଣ ଟୋକା"କୁ "ତଡ଼ି" ଦେଇଥିଲେ – ସେଇ "ପଠାଣଟୋକା" ସାଲବେଗର ଆସ୍ଥାନଥିବା ବଳଗଣ୍ଡିରୁ ରଥଯାତ୍ରା ଦିନ ରଥ ଆଉ ଗଡ଼ିଲାନି। "ଜଗନ୍ନାଥଙ୍କ ପାଖରେ ଦଇତାଏ ଅଧିଆ ପଡ଼ିଲେ। ଜଗନ୍ନାଥ ସପନେଇଲେ – ସାଲବେଗ ବିନା ରଥ ଚଳିବନି।" ବର୍ଷ ବର୍ଷର ପୁରୁଣା ଘଟଣାରେ ପୁରୁଷ ପୁରୁଷର କଳ୍ପନାରୁ ତ ସୃଷ୍ଟି ହୋଇଥାଏ କିମ୍ବଦନ୍ତୀ। ସାଲବେଗ କିମ୍ବଦନ୍ତୀ ଭିତରେ କିନ୍ତୁ ମନୁଷ୍ୟତାର ଆବାହନ ଭାରି ଟାଣୁଆ ହେଇ ବସିରହିଛି। ସେଇ ମନୁଷ୍ୟତାର ପ୍ରଖର ସ୍ପର୍ଶ ଯେମିତି ବଳରାମଦାସଙ୍କ ଜୀବନରେ ଅଛି ସେମିତି ବି ଥିଲା, "ଜଗନ୍ନାଥଙ୍କ ଭିତର ବେଢ଼ାରେ ସତ୍ୟନାରାୟଣଙ୍କ ମନ୍ଦିରକୁ ପୂଜା ପାଇଁ ଓଡ଼ିଶାର ଧର୍ମାନ୍ତରିତ ମୁସଲମାନମାନେ ଯିବା ଦୃଷ୍ଟାନ୍ତ" ଭିତରେ। ମୈତ୍ରୀ ଓ ସମତାର ଏ ମହାପୀଠ, ପୁଣି ସୌହାର୍ଦ୍ଦ୍ୟ ଓ ସହୃଦୟତାର ଏ ଜାତି ତ ସେଇ ମନୁଷ୍ୟତାର କରିଆସିଚି ଜୟଗାନ! ସେଇ ତ ଏ ଜାତିକୁ ଚିହ୍ନିବାର ଗୋଟିଏ ବାଟ!

କିମ୍ବଦନ୍ତୀ ଗୁଡ଼ିକର ଧୂଳିମଳି ଭିତରୁ ମନଦେଇ ଖୋଜିବସିଲେ ଏମିତି କେତେ ସତ୍ୟ ଆପଣାଛାଏଁ ଦୃଶ୍ୟ ହେଇଯାଏ। ଖାଲି ଆଉ ନୀଳକଣ୍ଠ କହିଥିଲେ, କିମ୍ବଦନ୍ତୀର ଅସ୍ଥି ଭିତରେ ସତ୍ୟର ମଜ୍ଜା ନିହିତ ଥାଏ ବୋଲି !

ବଳରାମଦାସଙ୍କ ସୁଖ୍ୟାତ ରଚନା 'ଭାବସମୁଦ୍ର' ପଛରେ ଅଛି ଅଭାବନୀୟ ଏକ କିମ୍ବଦନ୍ତୀ। ରଥଯାତ୍ରା ପୂର୍ବ ଦିନ କୌଣସି ମାହାରୀ ଘରେ ରାତ୍ରୀ ଯାପନ କରି ସକାଳେ ରଥଯାତ୍ରାର ଘଣ୍ଟମାଡ଼ରେ ନିଦ ଭାଙ୍ଗି ସେଇ ଅଶୌଚ ଅବସ୍ଥାରେ ରଥକୁ ଚଢ଼ିବାରୁ ପଣ୍ଡା ଓ ରାଜକର୍ମଚାରୀ ତାଙ୍କୁ ରଥକୁ ଉଠାଇ ଦେଲେ ନି। କୁହାଯାଏ, ଅଭିମାନୀ ଭକ୍ତ, ବାଲିରେ ରଥଟିଏ ଗଢ଼ି ତାଙ୍କ ପ୍ରାଣର ବ୍ୟଥାକୁ ବ୍ୟକ୍ତ କରିଥିଲେ କବିତାରେ – ଯାହାର ନାମ ହେଲା 'ଭାବସମୁଦ୍ର'। ଏ ଅଭିମାନୀ ଭକ୍ତର ଭକ୍ତି କୁଆଡ଼େ ଅଟକେଇ ଦେଇଥିଲା ଚଳନ୍ତା ରଥକୁ। ଭକ୍ତିର ଏ ଦିବ୍ୟ ପରାକାଷ୍ଠା ବିଜ୍ଞାନ ନିର୍ଭର ପାଠକ ବିଶ୍ୱାସ କରିବେ କି? କିମ୍ବଦନ୍ତୀ ତ ଆପଣା ବାଗରେ ଗଢ଼ି ହେଇଯାଏ। କୁମାର ମହାନ୍ତି କିନ୍ତୁ ରଥ ନ ଚଳିବାର ବ୍ୟାଖ୍ୟା ଭିନ୍ନଭାବେ, ଆପାତତଃ ବିଶ୍ୱାସବୋଧ ଭାବେ କରିଛନ୍ତି, "ସେ (ବଳରାମ ଦାସ) ସେଇଠି ଭାବସମୁଦ୍ର ଗାଇଥିଲେ ଏବଂ ତାଙ୍କ ଶିଷ୍ୟମାନେ ସେ ଧାଡ଼ି ସବୁର ଘୋଷା ଧରିଥିଲେ। ସେ ଯୁଗର ଏତେ ପ୍ରସିଦ୍ଧ କବିର ରଚନା ଶୁଣିବାରେ ଯାତ୍ରୀମାନେ ରଥଦଉଡ଼ା ଛାଡ଼ି ଏପରି ଭିଡ଼ କଲେ ଯେ – ଶେଷକୁ ରଥ ଚଳିଲା ନାହିଁ।"

ଜାତୀୟ ଅସ୍ମିତାର ଅନ୍ୱେଷଣରେ ଅନ୍ଧ ହେଇପଡ଼ି ନାହାନ୍ତି କୁମାର ମହାନ୍ତି। ଇତିହାସର ଅଂଶ ବିଶେଷ ଭାବେ ମାନ୍ୟତା ପ୍ରାପ୍ତ ଓ ପୁଣି ବର୍ତ୍ତମାନର ବିସ୍ତାରିତ ଜ୍ଞାନ ଜଗତରେ ମୌଖିକ ଇତିହାସ (oral history) ଭାବେ ସ୍ୱୀକୃତ ଜ୍ଞାନ ଚର୍ଚ୍ଚାରେ କିମ୍ବଦନ୍ତୀ କେବଳ ଯେ ପାରମ୍ପରିକ କାହାଣୀ ନୁହେଁ ତାର ରହିଚି ବହୁ ସ୍ତରୀୟ ରୂପ – ତାକୁ ନାନା ଭାବେ ଦେଖାଇଛନ୍ତି ଲେଖକ। ପୁରୀଗାମୀ ସେ ବସ୍ ବାଟମଙ୍ଗଳା ବାଟ ଦେଇ ଆସୁ ଆସୁ ବାଟମଙ୍ଗଳାର କିମ୍ବଦନ୍ତୀ ଚର୍ଚ୍ଚା ହେଲା ବେଳେ ସେ ଶିକ୍ଷିତ ନବଯୁବ ଦଳରୁ କେହି ମନ୍ତବ୍ୟ ଦେଇଥିଲା, "ଏଗୁଡ଼ା ଅଦରକାରୀ। ଶୁଖିଲା କଥାରେ ମୁଣ୍ଡଖରାପ କରିବାକୁ ବେଳ କାହିଁ?" – ତଟସ୍ଥ ସେ ଯାତ୍ରୀ, ଏ ରଚନାର କେନ୍ଦ୍ରୀୟ ଚରିତ୍ର, ସବୁଘଟଣାର ମୂକସାକ୍ଷୀ ଏତେ ଏତେ କିମ୍ବଦନ୍ତୀର ଚର୍ଚ୍ଚା କରୁକରୁ ସତେ ଯେମିତି ସେମାନଙ୍କୁ ଗୌରବାବୁଙ୍କ ପରି ଉତ୍ତର ଦେଇଛନ୍ତି, "ଅଦରକାରୀକୁ ଦରକାରରେ ଲଗେଇ ପାରିବା ହିଁ ବାସ୍ତବ ଜୀବନ କଳା"। ସେଇ ଜୀବନକଳା 'ଧନ୍ୟ ସେହୁ ପୁରୀ'କୁ କରିଚି ପ୍ରକୃତପକ୍ଷେ ଧନ୍ୟ ଓ ଅସ୍ମିତା ସନ୍ଧାନର ସେ ସଂଘାତମୟ ବାଟକୁ କରିଚି ସହଜଗମ୍ୟ !

॥ ୩ ॥

ଅନ୍ୱେଷଣ ଯେତେବେଳେ ହୁଏ ଆକାଂକ୍ଷା..., ଆକାଂକ୍ଷା ଯେତେବେଳେ ପରିଣତ ହୁଏ ଆବେଗରେ ସେତେବେଳେ ଲେଖକ ସାଧାରଣରେ ବି ଦେଖିପାରେ ଅସାଧାରଣତା। ସାମାନ୍ୟ ଭିତରୁ ସାଉଁଟିପାରେ ସମ୍ଭାବନା, ଅବହେଳିତକୁ କରିପାରେ ଅମୂଲ୍ୟ।

ଓଡ଼ିଶୀ ସଂସ୍କୃତିର ସ୍ୱରୂପ ଅନ୍ୱେଷଣରେ ବେଳେବେଳେ ବିଭିନ୍ନ ଶବ୍ଦକୁ ତାର ପ୍ରସଙ୍ଗ ସହିତ ଓ ପ୍ରସଙ୍ଗ ଭିନ୍ନ ବିଚାରକରି କିପରି ସେଗୁଡ଼ିକ ଓଡ଼ିଶୀ ସାଂସ୍କୃତିକ ଧାରାରେ ନିଜର ଭୂମିକା ରଖିପାରିଛନ୍ତି, କଥକତା ଛଳରେ ଜଣାଇଛନ୍ତି କୁମାର ମହାନ୍ତି।

ଶବ୍ଦର ବୈଶିଷ୍ଟ୍ୟ ହେଉଛି, ପ୍ରଚଳନ ସହିତ ସମୟକ୍ରମେ ସେଗୁଡ଼ିକ ନିଜର ରୂପ ଓ ଅର୍ଥ ବଦଳାଇଥାଆନ୍ତି। ସମାନ ଶବ୍ଦ ଭିନ୍ନଭିନ୍ନ ପୃଷ୍ଠଭୂମିରେ ଭିନ୍ନଭିନ୍ନ ରୂପ ବା ଅର୍ଥରେ ପରିଚିତ ହୁଅନ୍ତି। ବେଳେବେଳେ ଉଦ୍ଦେଶ୍ୟ ସମାନ ହୋଇଥିଲେ ବି ଅର୍ଥଗତ ଭେଦ ପ୍ରସଙ୍ଗ ଭିନ୍ନତାରେ ଆସି କୌଣସି ସାମାଜିକ ସାଂସ୍କୃତିକ ଭାଷାଦାନର ଇଙ୍ଗିତ ଦେଇଥାଏ।

ଶବ୍ଦ ଯେହେତୁ ଅନ୍ୟତମ କ୍ଷୁଦ୍ରତମ ସାଂସ୍କୃତିକ ଏକକ – ତାର ଚର୍ଚ୍ଚାରେ କୁମାର ମହାନ୍ତି ଖୁବ୍ ସଚେତନ। ସାଲବେଗଙ୍କ ପ୍ରସଙ୍ଗରେ ସାଧାରଣରେ ବ୍ୟବହୃତ ଓ ପରିଚିତ 'ଛତା'ର ଶଂଖକ୍ଷେତ୍ରୀୟରୂପ ଏପରି, "ପୁରୀରେ ଛତାପକେଇ ଆଗେ ବାବାମାନେ ଏମିତି ବଡ଼ଦାଣ୍ଡରେ ବସୁଥିଲେ। ସେଇ ଛତା ତଳେ ଧୂନି ହେଉଥିଲା, ଯଜ୍ଞ ହେଉଥିଲା, ସଂକୀର୍ତ୍ତନ ହେଉଥିଲା ଏବେବି ପୁରୀରେ ଦୁଇଟା ମଠ ଅଛି ଯାହାର ନାମ 'ବଡ଼ଛତା ମଠ' ଓ 'ସାନଛତା ମଠ'। ଛତା ତାଳବାହୁଙ୍ଗା ଓ ତାଳପତ୍ରରେ ତିଆରି ହଉଥିଲା। ମଝିରେ ମଝିରେ ଖୁମ୍ବ ସବୁଥିଲା"। ନାମ ଗତ ସମତା ସତ୍ତ୍ୱେ ଅଞ୍ଚଳ ଓ ଅଧ୍ୟାତ୍ମ ଦୃଷ୍ଟିରୁ ସାଧାରଣ ନାଗରିକର 'ଛତା', ମହିମା ସନ୍ନ୍ୟାସୀଙ୍କ 'ଛତା' ଓ ପୁରୀର 'ଛତା' ଭିତରେ କେତେ ପାର୍ଥକ୍ୟ! ଏ ଅର୍ଥଗତ ଭିନ୍ନତାକୁ ଯେ ଜାଣିବ ସେ ସିନା ସଂସ୍କୃତିର ମଞ୍ଜ ଖୋଜିବ! ସେମିତି ବି 'ଗୁଣ୍ଡିଚା' କି 'ଗଜମୂର୍ଖ'ର ପ୍ରସଙ୍ଗ 'ଧନ୍ୟ ସେହୁ ପରୀ'ରେ ଗୋଟିଏ ଗୋଟିଏ ନବଦିଗନ୍ତର ଉନ୍ମୋଚନ କରେ। ପ୍ରଚଳିତ ଓ ବିଶ୍ୱାସବଦ୍ଧ ସାଧାରଣଙ୍କ ସହଜ ଅଙ୍ଗୀକାରଠାରୁ ଏ ଶବ୍ଦ ଗୁଡ଼ିକର ଉତ୍ପତ୍ତିଜାତ ସମ୍ଭାବ୍ୟ କାରଣମାନ ଦେଖାଇ କୁମାର ମହାନ୍ତି ନିଜର ବହୁପାଠିତାକୁ କେବଳ ପ୍ରତିପାଦନ କରିନାହାନ୍ତି, ପ୍ରତିପାଦନ ମଧ୍ୟ କରିଛନ୍ତି ସତ୍ୟର ଅନ୍ୱେଷଣ ପାଇଁ ତାଙ୍କର ଆକାଂକ୍ଷା କେତେ ତୀବ୍ରଭାବେ ଆବେଗରେ ରୂପାୟିତ।

ପୁରୀରେ ଶ୍ରୀଜଗନ୍ନାଥ ବିଗ୍ରହ ତ୍ରୟର ପ୍ରତିଷ୍ଠାର ପୃଷ୍ଠଭୂମିରେ ଯେଉଁ ରାଜା ଇନ୍ଦ୍ରଦ୍ୟୁମ୍ନଙ୍କ ଭୂମିକା ରହିଚି, ତାଙ୍କର ସ୍ତ୍ରୀଙ୍କ ନାମଥିଲା ଗୁଣ୍ଡିଚା। ସେଇଠୁ ଗୁଣ୍ଡିଚା ଯାତ ହୋଇଚି, ହୋଇଚି ଗୁଣ୍ଡିଚା ମନ୍ଦିର। ମାତ୍ର ଯାପଛର କାରଣ କିଛି ଯୁକ୍ତିଯୁକ୍ତତାରେ ସିଦ୍ଧ ନୁହେଁ। କୁମାର ମହାନ୍ତି ଗୋଟିଏ ସମ୍ଭାବନାର ଇଙ୍ଗିତ ଦେଇଛନ୍ତି, "ବ୍ରହ୍ମପୁରାଣ ଅନୁସାରେ ପୁରୀରେ ବାଳଖିଲ୍ୟ ଋଷିମାନେ ବାସକରୁଥିଲେ। ××× ସେମାନେ 'ଗଣ୍ଡଶିଳ ସାଧନ' କରୁଥିବାରୁ ପୁରୀରେ ଗୁଣ୍ଡିଚାଯାତ୍ରା ହୁଏ।" ଅନୁରୂପ ଭାବେ ଓଡ଼ିଆ ଭାଷାରେ ସାଧାରଣ ଭାବେ ବହୁ ପ୍ରଚଳିତ "ଗଜମୂର୍ଖ" ଶବ୍ଦଟିର ଉତ୍ପତ୍ତିଗତ ଏକ ଧର୍ମୀୟ ବୈରତାର କାହାଣୀର ଇଙ୍ଗିତ ଦେଇଛନ୍ତି ଲେଖକ। "ବ୍ରାହ୍ମଣମାନେ ବୌଦ୍ଧଧର୍ମାବଲମ୍ବୀମାନଙ୍କୁ ଉପହାସ କରି 'ମୂର୍ଖ' କହିବାକୁ ଯାଇ ଗୋଟେ ନୂଆ ଶବ୍ଦବି ସୃଷ୍ଟି କରିଥିଲେ – ତା' ହେଲା 'ଗଜମୂର୍ଖ'। ଗଜ ବୌଦ୍ଧଧର୍ମର ପ୍ରତୀକ।" ଏମତ ପଛରେ ଆଉ କେଉଁ ତତ୍ତ୍ୱବାନମାନେ ଅଛନ୍ତି ତାର କୌଣସି ସୂଚନା ଏ ଲେଖାରେ ଆପାତତଃ ନାହିଁ। ତେବେ ଅନ୍ୟତମ ଭାଷାତତ୍ତ୍ୱବିତ୍ ଡ. ବାସୁଦେବ ସାହୁ

ସମଧର୍ମା ଏକ ମତ ଦେଇଥାଆନ୍ତି । ଅଶୋକ ନିଜ ପାଇଁ ସଗର୍ବ ଚଳାଇଥିବା 'ଦେବାନାଂପ୍ରିୟ' (ଦେବତା ମାନଙ୍କର ପ୍ରିୟ) ଶବ୍ଦ ବୌଦ୍ଧଧର୍ମର ପତନ ପରେ 'ମୂର୍ଖ' ଅର୍ଥ ବହନ କରିଥିଲା" (ଭାଷା ବିଜ୍ଞାନର ରୂପରେଖ) । ଏଠି ସ୍ମର୍ତ୍ତବ୍ୟ ଯେ ଅନେକ ସମୟରେ ଭାଷାବିତ୍‌ମାନେ ଔଚ୍ଚାରଣିକ କାଠିଣ୍ୟ, ଶବ୍ଦର ରୂପ ପରିବର୍ତ୍ତନର ଅନ୍ୟତମ କାରଣ ବୋଲି ସ୍ୱୀକାର କରିଥାଆନ୍ତି । ସାଧାରଣ ପ୍ରଚଳନରେ କୌଣସି ଶବ୍ଦ ଯଦି ଲୋକଙ୍କ ଉଚ୍ଚାରଣରେ ଠିକ୍‌ଠିକ୍ ଉଚ୍ଚାରିତ ନ ହୁଏ କାଳକ୍ରମେ ଲୋକେ ତାକୁ ନିଜଭାବେ ଶବ୍ଦର ଧ୍ୱନିସମତା ରଖି ବଦଳାଇ ଦେଇଥାଆନ୍ତି । ଓଡ଼ିଆରେ 'ଗଣ୍ଡମୂର୍ଖ' କଥାଟି ବହୁ ପ୍ରଚଳିତ । 'ଗଣ୍ଡ' ଶବ୍ଦଟି ବିଶେଷଣରେ 'ପ୍ରଧାନ' ଅର୍ଥ ବହନ କରେ (ଶବ୍ଦ ତତ୍ତ୍ୱବୋଧ ଅଭିଧାନ, ଗୋପୀନାଥ ନନ୍ଦଶର୍ମା) । ଗଣ୍ଡମୂର୍ଖ କଥାଟିର ଅର୍ଥ ତେଣୁ ମୁଖ୍ୟ ବା ପ୍ରଧାନ ମୂର୍ଖ ହୁଏ, ବ୍ୟଂଜନାରେ ଅତିମୂର୍ଖକୁ ବୁଝାଏ । 'ଗଜମୂର୍ଖ' ଶବ୍ଦଟି ମଧ୍ୟ ସେଇ ଅର୍ଥ ପ୍ରକାଶ କରେ (ତରୁଣ ଶବ୍ଦକୋଷ, କୃଷ୍ଣଚନ୍ଦ୍ର କର) । ଅତଏବ ଏକଥାକୁ କିପରି ଅସ୍ୱୀକାର କରାଯିବ ଯେ ଗଣ୍ଡମୂର୍ଖରୁ ଗଜମୂର୍ଖର ଆଗମନ ନ ହୋଇଥିବ ? 'ଗଣ୍ଡ' ଶବ୍ଦ ସହିତ 'ଗଜ'ର ମଧ୍ୟ ଏକ ସଂପର୍କ ରହିଚି । 'ଗଣ୍ଡ'ର ଅନ୍ୟଏକ ଅର୍ଥ 'ଗଜକୁମ୍ଭ' ପୁଣି 'ହସ୍ତିକପୋଳ' । (ଶବ୍ଦତତ୍ତ୍ୱବୋଧ ଅଭିଧାନ) ।

ନୂଆ ଏକ ଶବ୍ଦର ପ୍ରୟୋଗ ରହିଚି 'ଧନ୍ୟସେହୁ ପୁରୀ'ରେ । ତାହା "କୋକଲି ପବନ" । ଅଞ୍ଚଳ ଭେଦରେ ପ୍ରାକୃତିକ କାରଣରୁ ନାନା ଶବ୍ଦ ଲୋକମୁଖରେ ପ୍ରଚଳିତ ହୋଇଥାଏ । 'କୋକଲି ପବନ' ସେଇପରି ଏକ ଶବ୍ଦ । ସେ ଶବ୍ଦର ଉତ୍ପତ୍ତିଗତ ରୂପ କୁମାର ମହାନ୍ତି ଦେଇଚନ୍ତି ଏଇପରି, "ଆକାଶରେ ପୁଷମାସିଆ ବୁଦିବୁଦିକିଆ ମେଘତଳେ ସୂର୍ଯ୍ୟ ଛପି ଯାଇଛି । ପୁଷୁ-କାହାଁଳ । ପବନ ପିଟୁଛି ଜୋରରେ ।

- ବୁଝିଲୁ ମଣି ! ଯେ ହେଲା କୋକଲି ପବନ ।

- ମାନେ । ଗୌର ପଟ୍ଟନାୟକ ପଚାରିଲେ ।

- କୋକଲି ମାଛ - ଇଂଲିଶରେ ଯାହାକୁ କହନ୍ତି 'saridon'- ଏଇମିତି ପବନ ହେଲେ ବହୁତ ପଡ଼ନ୍ତି, କିଲୋ ଆଠଅଣାରେ ବିକ୍ରି ହୁଏ । ମାଛ ଖାଲି ଭାଜି କରିତ ଖାଇଯିବ ।" ଶବ୍ଦଟି ଆଞ୍ଚଳିକ ଭାଷିକ ସଂସ୍କୃତିର ଉପାଦାନ ଭାବେ ଏ ଲେଖାରେ ସଂରକ୍ଷିତ !

ଅନେକ ସମୟରେ ଉଚ୍ଚାରଣଗତ କାଠିଣ୍ୟ ଶବ୍ଦରଦୀର୍ଘତାକୁ ନେଇ କାଳ କ୍ରମରେ ଶବ୍ଦର ପରିବର୍ତ୍ତନ ଘଟିଥାଏ । ସମାଜରେ ଶବ୍ଦର ପରିବର୍ତ୍ତିତ ରୂପଟି କଥିତ ହୁଏ ଓ ମୂଳ ଶବ୍ଦଟି ଲୋକରେ ବିସ୍ମୃତ ହୁଏ । 'ମାଉସୀମା' ଭାବେ ଖ୍ୟାତ ଦେବୀଙ୍କ ନାମ ବର୍ତ୍ତମାନ 'ଅର୍ଦ୍ଧାଶନୀ' । ମୂଳନାମ କୁଆଡ଼େ ଥିଲା 'ଅର୍ଦ୍ଧଶୋଷଣୀ' ! 'ଅର୍ଦ୍ଧଶୋଷଣୀ'ର ବ୍ୟାଖ୍ୟା ମଧ୍ୟ ବିଚିତ୍ର-" ଯେତେବେଳେ ପ୍ରଳୟ ଆସେ - ସେ ଅର୍ଦ୍ଧେକ ଶୋଷି ଦିଅନ୍ତି ବୋଲି ବଡ଼ଦାଣ୍ଡରେ ପାଣିପଶେନି ।" ତେବେ 'ଅର୍ଦ୍ଧଶନୀ'ର ଆଗମନ 'ଅର୍ଦ୍ଧଶୋଷଣୀ'ରୁ ?

ଶବ୍ଦଟିର ସଂସ୍କୃତମୂଳକୁ ଅନୁକରଣ କରି ତେବେ 'ଅର୍ଦ୍ଧାଶନୀ' ! ଶବ୍ଦ ଗଠନରେ କି ବିଚିତ୍ର କଳ୍ପନା ମଣିଷର କାମନ କରିଛି ! ଜଗନ୍ନାଥ ଯଦି ସବୁର ମୂଳ, ତାଙ୍କ ମନ୍ଦିରକୁ ପ୍ରଳୟତ ସ୍ପର୍ଶ କରିନପାରେ । ମାତ୍ର ସେଥିଲାଗି ତ ଗୋଟିଏ ବିଶ୍ୱାସ୍ୟ ଧର୍ମୀୟ ପ୍ରସଙ୍ଗ ଲୋଡ଼ା ।

'ଅର୍ଦ୍ଧଶୋଷଣୀ' ହୁଏତ ତାନ୍ତ୍ରିକ ବୌଦ୍ଧଦେବୀ ହୋଇପାରନ୍ତି ସେଇ ମାତ୍ର ସେ ଏପରି ଏକ ପରିକଳ୍ପନାରୁ ଚିତ୍ରିତ। ଏଠି ଜଗନ୍ନାଥଙ୍କ ବଡ଼ପଣ ଜାହିର୍ ହେଲା – ଅର୍ଦ୍ଧାଶନୀ ପାଇଁ ଜାଗତିକ ବିପତ୍ତିରୁ ତାଙ୍କୁ ସୁରକ୍ଷିତ ବି ରଖାଗଲା! ଶବ୍ଦର ଗଠନରେ ଅନେକ ସମୟରେ ସାମାଜିକ ବିବିଧ କାରଣବି କାମ କରିଥାଏ। ସାମାଜିକ ଚଳନ, ଯୁଦ୍ଧବିଗ୍ରହ, ପ୍ରାକୃତିକ ବିପର୍ଯ୍ୟୟ ହେତୁ ବହୁ ଶବ୍ଦର ଗଠନ, ଗଠିତ ଶବ୍ଦର ବିବର୍ତନ, ବିବର୍ତ୍ତିତ ଶବ୍ଦର ପୁନଃ ବିବର୍ତ୍ତନ ଘଟିଥାଏ। ସମାନଭାବେ କୌଣସି ଶବ୍ଦର ଏକାଧିକ ବ୍ୟୁତ୍ପତ୍ତି; ଟିକିଏ ପାରିଭାଷିକ ଶବ୍ଦ ଦେଇ କହିଲେ 'ନିରୁକ୍ତ'ର ସଂଭାବନା ମଧ୍ୟ ତତ୍ତ୍ୱବିଦ୍‌ମାନେ ଜଣାଇଥାଆନ୍ତି।

କୁମାର ମହାନ୍ତି 'କଳିଙ୍ଗ' ବା ଗଜପତି ଶବ୍ଦର ବିଶ୍ଳେଷଣରେ ତାହା ଦେଖାଇବାର ପ୍ରୟାସ କରିଛନ୍ତି। ବିନାୟକ ମିଶ୍ରଙ୍କ ମତ ଅନୁସରଣରେ ସେ କହିଛନ୍ତି, "ରଜୋବତୀ ନୋହିଥିବା ବାଳିକାଙ୍କ ସଙ୍ଗେ ଯେଉଁମାନେ ରତିକ୍ରୀଡ଼ା କଲେ ସେମାନେ 'କଳିଙ୍ଗ' ନାମରେ ଅଭିହିତ ହେଲେ"! ଏହା ବ୍ୟତୀତ ଯେଉଁ ପୌରାଣିକ ବ୍ୟାଖ୍ୟା ଏଥିରେ ରହିଚି, ତାହା ଦୀର୍ଘତମା ଋଷି ଓ ସୁଦେଷ୍ଣାଙ୍କ ମିଳନରୁ ଯେଉଁ ପୁତ୍ରଗଣ ଜନ୍ମନେଲେ 'କଳିଙ୍ଗ' ତନ୍ମଧ୍ୟରୁ ଜଣେ। ତାଙ୍କ ସ୍ଥାପିତ ରାଜ୍ୟର ନାମ ହେଲା କଳିଙ୍ଗ। ଏ ପୌରାଣିକ ବ୍ୟାଖ୍ୟା 'ଚରିତ ଚିନ୍ତାମଣି' (ନୀଳକଣ୍ଠ ରଥ) କିମ୍ବା 'ପୁରାଣ କୋଷ' (ଦ୍ୱିତୀୟ ଖଣ୍ଡ ୨୦୧୮, ନୃସିଂହ ପ୍ରସାଦ ଭାଦୁଡ଼ି) ଆଦିଙ୍କ ଦ୍ୱାରା ମଧ୍ୟ ସମର୍ଥିତ। ଅନୁରୂପ ଭାବରେ 'ଗଜପତି' ଶବ୍ଦର ମଧ୍ୟ ଐତିହାସିକ, ଧର୍ମୀୟ ଓ ରାଜନୀତିକ ଉତ୍ସର ସନ୍ଧାନ କଥୋପକଥନ ଛଳରେ ଏଥିରେ କରାଯାଇଛି। ମୂଳତଃ ଏ ଶବ୍ଦ ସହିତ ଲୋକପ୍ରିୟ ବ୍ୟୁତ୍ପତ୍ତିଟି ହେଉଛି ଓଡ଼ିଶା ରାଜାଙ୍କ ବିଶାଳ ହସ୍ତୀବାହିନୀ ଥିବାରୁ ସେ 'ଗଜପତି' ଭାବେ ଖ୍ୟାତ ଥିଲେ। ବିବିଧ ଐତିହାସିକ ବିବରଣୀ ଏହାକୁ ସମର୍ଥନ କରନ୍ତି। ରାଜନୀତିକ କାରଣ ଭାବେ କୁହାଯାଇଛି, "ବ୍ରାହ୍ମଣ୍ୟ ସମର୍ଥନ ସତ୍ତ୍ୱେ ଓଡ଼ିଶାରେ ଗଙ୍ଗବଂଶ ଦୁର୍ବଳ ହୋଇ ଆସିଲା କାରଣ ସାଧାରଣ ଓଡ଼ିଆ ଏବଂ ଆଦିବାସୀ ପ୍ରାୟତଃ ବୌଦ୍ଧଧର୍ମର ଉପାସକ ଥିଲେ ଏବଂ ବ୍ରାହ୍ମଣ୍ୟ ସଂସ୍କୃତିକୁ ଗ୍ରହଣ କରୁନଥିଲେ। ତେଣୁ ବୋଧହୁଏ ସାଧାରଣ ଲୋକଙ୍କ ସମର୍ଥନ ପାଇବା ପାଇଁ ବୌଦ୍ଧଧର୍ମର ପ୍ରତୀକ 'ଗଜ'ର 'ପତି' ବା ଗଜପତି ଭାବେ ଶେଷ ଗଙ୍ଗରାଜାମାନେ ନିଜକୁ ବର୍ଣ୍ଣନା କରିଥିଲେ। ତା ପରେ ସୂର୍ଯ୍ୟବଂଶୀ ଓଡ଼ିଆ ରାଜା କପିଳେନ୍ଦ୍ର ବହୁଦାନ କରି ଏହି ଉପାଧି ଅର୍ଜନ କରିଥିଲେ।" ଯୁକ୍ତିଛଳରେ ଏକଥା ହୁଏତ କୁହାଯାଇଛି ମାତ୍ରେ, 'ବ୍ରାହ୍ମଣ୍ୟ ସଂସ୍କୃତିକୁ ଗ୍ରହଣ' କରୁନଥିବା ବୌଦ୍ଧମାନେ କିପରି ବା ଗଙ୍ଗରାଜାମାନଙ୍କୁ ଏ 'ବିରୁଦ – ଶବ୍ଦ' ବଳରେ ସମର୍ଥନ କରିବେ? ଯେତ ହେଇଥିବ ଏକ ଅପମାନଜନକ ଶବ୍ଦ, ବିଜେତା ଓ ବିଜିତର ଇଙ୍ଗିତ ଯିଏ କରୁଚି! 'ପତି' ଅର୍ଥାତ୍ ସ୍ୱାମୀ ବା ପ୍ରଭୁ। ସମର୍ଥନ ଆଶାରେ ତ ଆଉ 'ପ୍ରଭୁ' ଶବ୍ଦ ଗ୍ରହଣୀୟ ହେଇନପାରେ; ବନ୍ଧୁ, ସଖା, ମିତ୍ର, ଶୁଭେଚ୍ଛୁ, ସୁହୃଦ୍ ଏପରିଶବ୍ଦ ଆସିବା ଉଚିତ୍‌ଥିଲା। 'ଗଜପତି'ର ଏ ରାଜନୀତିକ ବ୍ୟାଖ୍ୟାରେ ଗୋଟିଏ ପ୍ରଶ୍ନବାଚକ ଅବଶ୍ୟ ରହିଯାଉଛି। କିନ୍ତୁ ଏକଥା ସତ ଯେ ବୌଦ୍ଧ – ବ୍ରାହ୍ମଣର ସଂପର୍କଗତ ତିକ୍ତତା ଓ ପାରସ୍ପରିକ ବିରୋଧିତାର ମାଦଳାପାଞ୍ଜି ଗତ ଚିତ୍ରଣଠୁ ଆରମ୍ଭ କରି ଯେଉଁ ଇତିହାସ

ଓ ସାହିତ୍ୟର ଲମ୍ବାଧାରାଟି ଓଡ଼ିଶାରେ ଅଛି, 'ଧନ୍ୟସେହୁପୁରୀ' ତାକୁ ପୁଣିଥରେ ସମର୍ଥନ କରିଚି ଏ 'ଗଜପତି' ଶବ୍ଦଟି ମାଧ୍ୟମରେ। ଯା ସହିତ ଏଥିରେ ରହିଚି ଅନ୍ୟ ଏକ ବ୍ୟାଖ୍ୟା। ଓଡ଼ିଶାର ମନ୍ଦିରକଳାରେ ଲୋକପ୍ରିୟ ହାତୀ ଉପରେ ସ୍ଥିତ ସିଂହର ମୂର୍ତ୍ତିଯେ ବଜ୍ରଯାନୀ ତନ୍ତ୍ର ପ୍ରଭାବ ଓ ବୌଦ୍ଧଧର୍ମର ଏକ ପ୍ରତୀକ – ଏହା ସ୍ୱୀକୃତ ହୋଇଛି। ହାତୀ ବୌଦ୍ଧଧର୍ମର ପ୍ରତୀକ ହୋଇଥିବା ବେଳେ ଶକ୍ତିର ପ୍ରତୀକ ଭାବେ ଆସିଛି ସିଂହ। ଏ ମୂର୍ତ୍ତି ବଜ୍ରଯାନୀ ବୌଦ୍ଧଧର୍ମର ପ୍ରଭାବକୁ ଦର୍ଶାଏ। ଏଇ ପୃଷ୍ଠଭୂମିରେ କୁମାର ମହାନ୍ତିଙ୍କ ବ୍ୟାଖ୍ୟା ଏପରି, "ତେଣୁ 'ଗଜପତି' ବିରୁଦ ବ୍ୟବହାର କରି ଓଡ଼ିଶାର ରାଜା ନିଜକୁ ଏପରି ଏକ ଧର୍ମଧାରଣାର ନେତୃତ୍ୱ ନେଉଥିବାର ବା ଏପରି ଧର୍ମ ବିଶ୍ୱାସୀ ବୋଲି ସୂଚିତ କରିବା ପାଇଁ ବ୍ୟବହାର କରିଥିବାର ମନେହୁଏ।"

ସାଂସ୍କୃତିକ ଐତିହ୍ୟକୁ ଖୋଜିବାର ଚେଷ୍ଟା 'ଧନ୍ୟସେହୁ ପୁରୀ"ରେ 'ଶବ୍ଦ' ପରି ସାଂସ୍କୃତିକ କ୍ଷୁଦ୍ରତମ ଏକକ ଗୁଡ଼ିକ ମାଧ୍ୟମରେ ଶବ୍ଦର ଏକାଧିକ ବ୍ୟୁତ୍ପତ୍ତି ଗତ ରୂପର ଚର୍ଚ୍ଚା ଭିତରେ ବିବିଧ ସମ୍ଭାବନାର ଉପସ୍ଥାପନା – ଏହାର ଅନ୍ୟତମ କଥା ଉପସ୍ଥାପନାର କାରିଗରି। ଗଦ୍ୟର ନିଷ୍ପ୍ରାଣ ରୂପ ଇତିହାସ, କିମ୍ବଦନ୍ତୀ, ମୂର୍ତ୍ତିକଳା ଓ ପୁରାଣର ପ୍ରସଙ୍ଗୋଚିତ ଉପସ୍ଥାପନ ଭିତରେ ଯେପରି ସରସ ହୋଇଉଠିଚି ସେପରି ମଧ ତୀବ୍ର ହୋଇ ଉଠିଛି ସାଂସ୍କୃତିକ ଅନ୍ୱେଷା !

॥ ୪ ॥

'ଧନ୍ୟ ସେହୁ ପୁରୀ' ଲେଖାଯିବାର ହେତୁ କଣ? ଲେଖାଟିର ପ୍ରଥମ ଅଂଶଟି ପତ୍ରିକାରେ ପ୍ରକାଶ ପାଇବାବେଳେ ଏହାର ଯେଉଁ ସୂଚନା ନବରବିର ସଂପାଦକ, ସର୍ବସାଧାରଣଙ୍କୁ ଓଡ଼ିଶା ସଂସ୍କୃତି ଓ ଋହାଣିକୁ ବୋଧଗମ୍ୟ କରାଇବାକୁ ଏ ରଚନା ବୋଲି ଲେଖିଥିଲେ, ତାହା ହେଲେ ଆଉ ପାଞ୍ଚଟା ସଂସ୍କୃତି ଭିତ୍ତିକ ଲେଖାଠୁ ଯେ ଅଲଗା ହେଇନଥାନ୍ତା। କୁମାର ମହାନ୍ତି କିନ୍ତୁ ସର୍ବସାଧାରଣଙ୍କୁ ବୋଧଗମ୍ୟ କରାଇବାକୁ ଋହୁଁ ଥିଲେ 'ପ୍ରକୃତ' ଓଡ଼ିଆ ସଂସ୍କୃତି ଓ ତାତ୍ତ୍ୱିକ-ଦାର୍ଶନିକ ଜୀବନଦୃଷ୍ଟି। 'ଧନ୍ୟସେହୁପୁରୀ'ର ଜଣେ ଚରିତ୍ର ଅଧ୍ୟାପକ ବିଶ୍ୱରଞ୍ଜନ ଠାଏ କହିବାପରି, 'ଓଡ଼ିଆ ଜନଜୀବନ ଓ ଜଗନ୍ନାଥ ସଂସ୍କୃତିର ପୁନର୍ମୂଲ୍ୟାୟନ କରି ଅନାମ ମାନେ ମାନବ ଜାତିପାଇଁ ଏକ ମୈତ୍ରୀବାଦୀ ସମାଜର ସ୍ୱପ୍ନ ଦେଖୁଛନ୍ତି।' ଅନାମ ବାଲାଏ ଯଦି ଜଗନ୍ନାଥ ସଂସ୍କୃତିର re-valuation ଭିତ୍ତିରେ ମୈତ୍ରୀବାଦୀ ସମାଜର ସ୍ୱପ୍ନ ଦେଖୁଛନ୍ତି ତେବେ ସେ ଆନ୍ଦୋଳନର କର୍ଣ୍ଣଧାର କୁମାର ମହାନ୍ତି ଏଥିରୁ ତ ଆଉ ବାଦ୍ ପଡ଼ିବେ ନାଇଁ! ତେଣୁ ସେଇ ସ୍ୱପ୍ନ ପୂର୍ତ୍ତିର ପ୍ରଚେଷ୍ଟା ଏ ରଚନା। ସାଂସ୍କୃତିକ ପୁନର୍ମୂଲ୍ୟାୟନ ଦ୍ୱାରା 'ପ୍ରକୃତ ଓଡ଼ିଶା ସଂସ୍କୃତି'ର ବୋଧଗମ୍ୟତା ସାଧାରଣରେ ଆଣିବା ଲାଗି ଯେଉଁ ପ୍ରୟାସ, ତାହାରି ନାମ 'ଧନ୍ୟ ସେହି ପୁରୀ'।

କୌତୂହଳରୁ ଜନ୍ମନିଏ ପ୍ରଶ୍ନ, ପ୍ରଶ୍ନର ସମାଧାନ ପାଇଁ ଲୋଡ଼ା ହୁଏ ଅନୁସନ୍ଧାନ ଓ ସେଇ ଅନୁସନ୍ଧାନରୁ ଆସେ ପୁନର୍ମୂଲ୍ୟାୟନ। 'ଧନ୍ୟ ସେହୁ ପୁରୀ' ଏପରି ବହୁ କୌତୂହଳ,

ବହୁପ୍ରଶ୍ନ, ବହୁ ଅନୁସନ୍ଧାନର ବାଟ ଧରି ଧରି ପୁନର୍ମୂଲ୍ୟାୟନ ପାଖରେ ପହଞ୍ଚେ। ଯେ ଏକ ରଚନାରୀତି, ଯେଉଁଠି ସମସ୍ୟାର ପୂର୍ତ୍ତି ପୂର୍ବରୁ ନୂଆ ନୂଆ ସମସ୍ୟା ପହଞ୍ଚେ ଓ ସେଇ ସମସ୍ୟାର ସମାଧାନ କରୁ କରୁ ନୂଆ କିଛି ଘଟଣାର ସନ୍ଧାନ ମିଳେ।

ଶ୍ରୀମନ୍ଦିରରେ ପାଳିତ ହୁଏ ନାନାପ୍ରଥା – ଚଳିଆସୁଥାଏ ସେ ପରମ୍ପରା କ୍ରମେ। ସେ ପରମ୍ପରାରେ ପ୍ରଶ୍ନ କରିବା ଅର୍ଥ ପରମ୍ପରାବାଦୀଙ୍କ ରୋଷର ଶିକାର ହେବା। ହେଲେ ପୁନର୍ମୂଲ୍ୟାୟନ ଯାହାର ଲକ୍ଷ୍ୟ, ସେତ 'ରୋଷ'ର ତାପ କି ଆକ୍ରୋଶର ଝଞ୍ଜାରେ ଥମି ଯିବନି! ପୁଷମାସର ପହିଲିଭୋଗକୁ ନେଇ ପ୍ରଶ୍ନ ଉଠିଚି ଲେଖକ ମନରେ। ବିଶ୍ୱାସ ଅଛି ଲକ୍ଷ୍ମୀ ପୌଷମାସରେ ବାପଘରକୁ ଯାଇଥାନ୍ତି ବୋଲି ସକାଳୁ ସକାଳୁ ଜଗନ୍ନାଥଙ୍କ 'ମା' ତାଙ୍କ ପାଇଁ ଖେଚୁଡ଼ି କରି ପଠାନ୍ତି। ତାହାହିଁ ପହିଲି ଭୋଗ। 'ଜଗତରନାଥ – ଯିଏ ସବୁକିଛିର ସ୍ରଷ୍ଟା – ତା'ର ପୁଣି ମା କିଏ?' – ଏ ପ୍ରଶ୍ନ ଖାଲି ଉଠିନାଇଁ ଲେଖକ ମନରେ ସଞ୍ଚରୀ ଆସିଚି ପାଠକ ପର୍ଯ୍ୟନ୍ତ। ଏ ପ୍ରଶ୍ନ ମନେପକାଇ ଦେଇଛି ଗୌଡ଼ୀୟ ବୈଷ୍ଣବୀୟ ମତରେ ଯଦି ଯଶୋଦା ବା ଦେବକୀଙ୍କ ନାମୋଚ୍ଚାରଣ କରାଯିବ ତେବେ ସେ ଜଗନ୍ନାଥଙ୍କର ତ ମା' ହେବେ ନାହିଁ? ଅଥଚ ମା ନଥିଲେ ମାଉସୀ କାହୁଁ ଆସିଲେ? ଅନୁସନ୍ଧାନର ଏ ଧାରା ପାରମ୍ପରିକ ଏକ ସ୍ୱୀକୃତ ପ୍ରଥାକୁ ନେଇ ଜନ୍ମ ହୋଇଛି ସତ ମାତ୍ର ତାହାର ଅମୀମାଂସିତ ରୂପ ପାଠକର ଚିତ୍ତ – ମଂଥନ ପାଇଁ କରିଥାଏ ଏକ ବାତାବରଣର ସୃଷ୍ଟି।

ଚିତ୍ତ ମଂଥନର ଏପରି ବାତାବରଣ ଅନ୍ୟ ଏକ ପ୍ରସଙ୍ଗରେ ମଧ୍ୟ ଆସେ 'ଧନ୍ୟ ସେହୁ ପୁରୀ'ରେ। ବଳରାମ ଦାସଙ୍କ ଜୀବନ – ଚର୍ଚ୍ଚାବେଳେ ରାଜଶକ୍ତିକୁ ତାଙ୍କର ଦୃପ୍ତ ତାଚ୍ଛଲ୍ୟ ସହ ସମକାଳର କବିକୁଳର ସେଇ ନୈତିକ ସାହସକୁ ନେଇ ପ୍ରଶ୍ନ ଉଠିଛି। ଉତ୍ତର ଦେଇଛନ୍ତି ଅନ୍ୟତମ ଚରିତ୍ର ଏଡ଼ଭୋକେଟ ସତ୍ୟ ସିଂ, "ସବୁଯାକ କବି ବର୍ତ୍ତମାନ ସରକାରୀ ଠକିରିଆ। ××× ପେଟପାଟଣାକୁ ବା ଜୀବିକାକୁ ବଡ଼କରି ଜୀବନକୁ ଧ୍ୱଂସ କରୁଥିବା ଆମ ଆଜିକାର କବିମାନେ ଏ ସାହସ କିପରି କରିବେ – ସରକାରୀ code ଓ conduct ଭିତରେ?" – କୌଣସି ଜୀବନଭୀରୁ ବୁଦ୍ଧିଜୀବୀ ଗୋଷ୍ଠୀ ଜାତିନିର୍ମାଣର କଣ ଦେଖାଇପାରେ ସ୍ୱପ୍ନ? ବର୍ତ୍ତମାନର ବିନ୍ଦୁରୁ ତ ସଞ୍ଚରିତ ହୁଏ ଭବିଷ୍ୟତର ପରିକଳ୍ପନା। ସେ ବୁଦ୍ଧିଜୀବୀତ୍ୱ, ସେଇ ଜାତିଗଠକ, ସେଇ ସାଂସ୍କୃତିକ ଅଗ୍ନିଶିଖା କଣ ଖାଲି ବଳରାମ ଦାସ କି ଦୀନକୃଷ୍ଣ ଦାସ! ପରବର୍ତ୍ତୀ ପୁରୁଷ କଣ ଓଡ଼ିଆ ଜାତିର ଉତ୍ତରଣର, ସାଂସ୍କୃତିକ ମହତ୍ତ୍ୱର ସଂରକ୍ଷଣରେ ଦାୟବଦ୍ଧତା ନେବ ନାଇଁ?

ବଳରାମ ଦାସ ଭିତ୍ତିକ ପ୍ରସଙ୍ଗଟି ପ୍ରକାଶ ପାଇଥିଲା 'ଧନ୍ୟ ସେହୁ ପୁରୀ'ର ଦ୍ୱିତୀୟ ଅଂଶ ଭାବେ, ୧୯୭୬ ମସିହା ଅଗଷ୍ଟ ମାସ 'ନବରବି' ପୃଷ୍ଠାରେ। ଭାରତରେ ତତ୍‌କାଳୀନ ପ୍ରଧାନମନ୍ତ୍ରୀଙ୍କ ଦ୍ୱାରା ଲାଗୁକରାଯାଇଥିବା ଆଭ୍ୟନ୍ତରୀଣ ଆପାତକାଳୀନ ସ୍ଥିତି ବା ଜରୁରୀ ପରିସ୍ଥିତିର ସମୟ ସେତେବେଳକୁ ପ୍ରାୟ ତେର ମାସ ହୋଇ ସାରିଥିଲା। ଜରୁରୀ ପରିସ୍ଥିତି ଆଳରେ ବ୍ୟକ୍ତି ସ୍ୱାଧୀନତାକୁ ପଦଦଳିତ କରି ଆପଣା ସିଂହାସନର ସୁରକ୍ଷା କରୁଥିବା ରାଜଶକ୍ତି ବିରୋଧରେ ସୃଷ୍ଟି ହୋଇଥିଲା ପ୍ରବଳ ଜନରୋଷ। ସେଇ ଭୟଙ୍କର ଦମନ ଓ

ପେଷଣର ଦିନମାନଙ୍କରେ ନିର୍ଭୀକ, ନିର୍ବିକାରରେ ଜଣେ ଓଡ଼ିଆ କବି ବୋଲୁଥିଲା ଗୀତ,

କହନା କଥା... କହନା କଥା
କହିଲେ ଫିଟିବ ଅଡୁଆ ସୂତା
ଫିଟିଲେ ଗୁମର ସବୁତ ପିତା
ଲାଗିବ ପାଲା
ବାନ୍ଧିନେଇ ଯିବେ ପୁଲିସିବାଲା
ବାନ୍ଧି ନେଇ ଯିବେ ପୁଲିସିବାଲା

(ଆସନ୍ତାକାଲି, ଜୁନ୍, ୧୯୭୫)

××××

ବୁଢ଼ୀ ଅସୁରୁଣୀ ବଡ଼ ସିହାଣି
ଫରୁଆରେ ରଖେ ମଗଜ ଗଣି
କେହି ଦେଖିବେନି କେହି ବୁଝିବେନି
ଯାହାକୁହେ ସବୁ ଆକାଶବାଣୀ
ନ ମାନିଲା ଲୋକ – ମଥା କାଟି ନିଏ
ମାନିଲା ଲୋକ ତା ମଥାର ମଣି।

('ସଂସ୍କୃତି' ସାଂସ୍କୃତିକ ଅନୁଷ୍ଠାନର ମୁଖପତ୍ର
'ସଂସ୍କୃତି'ର ବାର୍ଷିକ ମୁଖପତ୍ର, ୧୯୭୬)

ଅକୁତୋଭୟ ଏ କବି ଆଉ କେହି ନୁହେଁ, ପୁରୀର ଉଜ୍ଜ୍ୱଳ ସନ୍ତାନ; ବଳରାମ, ଦୀନକୃଷ୍ଣଙ୍କ ଉତ୍ତରପୁରୁଷ କୁମାର ମହାନ୍ତି! ଯେଉଁ ବଳରାମଙ୍କ ଅନମନୀୟ ରୂପାୟନ ସେ 'ଧନ୍ୟସେହୁ ପୁରୀ'ରେ କରିଛନ୍ତି, ସେଇ ଚିତ୍ରଣର ଅନ୍ତରାଳରେ ଅଛି ଜରୁରୀକାଳୀନ ପରିସ୍ଥିତିର ଅନୁଭବ। ସେଇ ଭୟଦ ଅନୁଭବ ବିରୋଧରେ ଓଡ଼ିଆଙ୍କୁ ଭୟଶୂନ୍ୟ ଛିଡ଼ା କରାଇବାକୁ, ସେମାନଙ୍କ ଭିତରେ ଅନ୍ୟାୟ ଓ ଅବିଚାର ବିରୋଧରେ ଦମ୍ଭିଲା ଛିଡ଼ା ହେବାକୁ ଦେଇଚି ସଙ୍କେତ! ସାହିତ୍ୟକ ସବୁକଥା ଖୋଲାଖୋଲି କହିଦିଏ ନାଇଁ, କହେ ବର୍ଣ୍ଣନା ସହିତ ବ୍ୟଂଜନାର ଯୁଗଳ ବନ୍ଦୀତ୍ୱରେ। ପାଠକ ପ୍ରାଣରେ ଚମକ୍ ଲାଗିବ, ଆକୁଳତା ସୃଷ୍ଟି ହେବ। ପାଠକର ହୃଦ ଭାବନା ଆଉ ପାଞ୍ଚ ଜଣଙ୍କୁ ମତେଇବ। ବିପ୍ଳବ ଆଉ କେମିତି ଆସେ? ସମସ୍ତେ ନ ହେଲେବି ସରକାରୀ code ଆଉ conduct ଭିତରେ କୁମାର ମହାନ୍ତିଙ୍କ ପରି କବି ଯେ ଏପରି ସାହସ କରିପାରନ୍ତି, କହିବା ବାହୁଲ୍ୟ! ଏ ରଚନା 'ଆତ୍ମ ସମୀକ୍ଷା'ର ପ୍ରଶ୍ନ ଧରି ପାଠକଙ୍କୁ ପ୍ରରୋଚିତ କରେ। ଅତଏବ, 'ଧନ୍ୟ ସେହୁ ପୁରୀ' କ୍ରାନ୍ତିର ସ୍ୱପ୍ନ ଦେଖାଉଥିବା ଏକ ନିଷ୍କମ୍ପ କଣ୍ଠସ୍ୱର!

ଓଡ଼ିଶୀ ସଂସ୍କୃତିର ଅସଲ ରୂପ ଖୋଜୁଖୋଜୁ ସେଇବାଟରେ ଝଲସିଯାଇଛି ଓଡ଼ିଆ ଅସ୍ମିତାର ବିନ୍ଦୁ କେଇଟି 'ଧନ୍ୟ ସେହୁ ପୁରୀ'ରେ। ଓଡ଼ିଆ ସ୍ୱାଭିମାନର ଉଦ୍ରେକ କରିବା ସହିତ ଏହା ସାଂସ୍କୃତିକ ସ୍ୱରୂପ ଉନ୍ମୋଚନର କାରଣ ମଧ୍ୟ ହୋଇଛି। ରାମ ସୀତା ଯେ

ପରସ୍ପରର ଭାଇ ଭଉଣୀ – ଏ ମତ ସୁଖ୍ୟାତ ସୁନୀତି ଚଟାର୍ଜୀଙ୍କ ପୂର୍ବରୁ ପଣ୍ଡିତ ବିନାୟକ ମିଶ୍ର 'ଦଶରଥ ଜାତକ'ର ସୂତ୍ରଧରି କହିଥିବାର ଉଲ୍ଲେଖ ଏଥିରେ ରହିଚି। ଏହାର ସତ୍ୟ–ମିଥ୍ୟା ବିଚାରକୁ ବାଦ ଦେଇ ସୁନୀତି – ବିନାୟକଙ୍କ ବକ୍ତବ୍ୟ – ପ୍ରକାଶର କାଳଗତ ଉଲ୍ଲେଖ ଦ୍ୱାରା ବିନାୟକଙ୍କ ପ୍ରଥମତ୍ୱକୁ ସ୍ୱୀକାର କରାଯାଇଚି। ଏହା ସହିତ ଏପରି ଜଣେ ଓଡ଼ିଆ ପଣ୍ଡିତଙ୍କ ସମୃଦ୍ଧ – ଜ୍ଞାନର ପରିପ୍ରକାଶ ଦ୍ୱାରା ପରୋକ୍ଷରେ ପ୍ରତିଷ୍ଠା କରାଯାଇଛି ଓଡ଼ିଆ ଅସ୍ମିତାକୁ। ଅନୁରୂପଭାବେ ପୁରୀ ପ୍ରଚଳିତ ଏକ ସାଂସ୍କୃତିକ ଐତିହ୍ୟ କିପରି ସେ ଭୂମିର, ପରୋକ୍ଷରେ ଓଡ଼ିଶାର ଅସ୍ମିତାକୁ ବଢ଼ାଇ ପାରିଛି ତାହା ଏ ରଚନାରେ ଖୁବ୍ ଗୁରୁତ୍ୱପୂର୍ଣ୍ଣ ଭାବେ ପ୍ରତିଷ୍ଠା କରାଯାଇଛି। ଯଦି ଆର୍ଯ୍ୟ ଓ ଦ୍ରାବିଡ଼ ସଭ୍ୟତାକୁ ଏଠିକାର ଶବର ସଭ୍ୟତା ଠାରୁ ବଡ଼ ବୋଲି ମାନି ନିଆଯାଏ ତା'ହେଲେ ଯାହା ସବୁବେଳେ ହୁଏ – ଅର୍ଥାତ୍ ଯିଏ ଜିତେ ତା ସଂସ୍କୃତି, ଯିଏ ହାରେ – ତା' ସଂସ୍କୃତିକୁ ଚପେଇ ନିଏ – ଏଠି ହୋଇନି। ବରଂ ଏକ ବଡ଼ ସଂସ୍କୃତି – ଏକ ଛୋଟ ସଂସ୍କୃତିକୁ ମାନି ନେଇଛି। ଛୋଟ ସଂସ୍କୃତିର ଦେବତା ପାଇଁ ବଡ଼ ସଂସ୍କୃତିର ମହା ପଣ୍ଡିତମାନେ ସ୍ତୁତିଗାନ କରିଛନ୍ତି। ଶବରୀ ସଭ୍ୟତା predominant ହୋଇ ରହିଯାଇଛି ଏଠି – ସାରା ଭାରତରେ ଯେଉଁ ତୀର୍ଥସ୍ଥାନ ସବୁ ଅଛି – ସେମାନଙ୍କ ଭିତରେ ପୁରୀ ଏକ ଆଶ୍ଚର୍ଯ୍ୟ।" – 'ସାଧାରଣ'କୁ ଏପରି ମର୍ଯ୍ୟାଦାଜନକ ସ୍ୱୀକୃତି ଭିତରେ ବଢ଼ିଚି 'ଶ୍ରୀକ୍ଷେତ୍ର'ର ପୁଣି ଓଡ଼ିଶାର ଗୌରବ! Great tradition ରୁ little tradition ହୋଇ ସାଂସ୍କୃତିକ ସମନ୍ୱୟର କଥା କହିବାକୁ ଯାଇ କୁମାର ମହାନ୍ତି ଏଇ ଆର୍ଯ୍ୟ–ଦ୍ରାବିଡ଼–ଶାବର ସଂସ୍କୃତିର ପ୍ରସଙ୍ଗ ଆଣିଛନ୍ତି। ମୂଳତଃ ଉପରୋଲ୍ଲିଖିତ ଦୁଇ ଶବ୍ଦ ଗ୍ରେଟ ଟ୍ରାଡିସନ ଓ ଲିଟଲ ଟ୍ରାଡିସନ ଦୁଇଟି ପାରିଭାଷିକ ଶବ୍ଦରେ ପରିଚିତ ହୋଇ ଆବିଶ୍ୱ ପ୍ରତିଷ୍ଠିତ ଓ ଚର୍ଚ୍ଚିତ ହୋଇଥିଲା ଆମେରିକୀୟ ନୃତତ୍ତ୍ୱବିତ୍ ରବର୍ଟ ରେଡଫିଲ୍ଡ (୧୮୯୭–୧୯୫୮)ଙ୍କ ଦ୍ୱାରା। ମେକ୍ସିକୋରେ ନିଜର ରିସର୍ଚ୍ଚ କାଳରେ ସେ ଉଚ୍ଚ ଓ ଗୌଣ ପରମ୍ପରାର ପ୍ରସଙ୍ଗ ଉତ୍ଥାପନ କରିଥିଲେ। ଯଦିଓ ପରବର୍ତ୍ତୀ କାଳରେ ତାଙ୍କର ଏତତ୍ତ୍ୱକୁ ମଧ୍ୟ ପ୍ରଶ୍ନ କରାଯାଇଥିଲା ଯେ, କାହିଁକି କାହା ସଂସ୍କୃତିକୁ ଆମେ 'ଗୌଣ' (little) ବୋଲି କହିବା, ତାହାତ ସଂପୃକ୍ତ ସଂପ୍ରଦାୟର ପରିଚୟ ପ୍ରତିଷ୍ଠା କରୁଚି ଓ ସଂପ୍ରଦାୟର ବିଶ୍ୱାସବୋଧ ହେତୁ ତାହାର ଅସ୍ତିତ୍ୱ ସୁରକ୍ଷିତ ରହିଚି! ସେହିପରି ପ୍ରଶ୍ନ ଉଠିଥିଲା ଭାରତ ପରି ବହୁ ଭାଷିକ, ବହୁ ସାଂସ୍କୃତିକ ଦେଶରେ କେଉଁଟି ହେବ ମୁଖ୍ୟ / ପ୍ରଧାନ ପରମ୍ପରା ଓ କେଉଁଟି ବା ହେବ ଗୌଣ ପରମ୍ପରା ? ଏସବୁ ବୌଦ୍ଧିକ ବିଳାସକୁ ବାଦଦେଲେ ଏକଥା ମଧ୍ୟ ସତ୍ୟ ଯେ ଏଇ ଦୁଇ ଅବଧାରଣା ବହୁ ଚିନ୍ତାବିତ୍ଙ୍କ ସ୍ୱୀକୃତି ଲାଭ କରିଥିଲା ଓ ଜ୍ଞାନ ଚର୍ଚ୍ଚାର ପରମ୍ପରାରେ ତାର ନିର୍ଦ୍ଦିଷ୍ଟ ସ୍ୱାକ୍ଷର ରଖିଥିଲା। 'ଧନ୍ୟ ସେହୁ ପୁରୀ' ପ୍ରସଙ୍ଗରେ କୁମାର ମହାନ୍ତିଙ୍କ ଯୁକ୍ତି, ଏଦୁଇ ପାରିଭାଷିକ ଶବ୍ଦର ଭିତ୍ତିକୁ ନେଇ ଛିଡ଼ା ହୋଇଛି। ସମାନ ଭାବେ ଏହା ଓଡ଼ିଶାର ବଡ଼ପଣକୁ ପ୍ରତିଷ୍ଠା ଦେଉଛି।

ସାଂସ୍କୃତିକ ପୁନରାବିଷ୍କାରର ସୂତ୍ରପାତ 'ଧନ୍ୟ ସେହୁ ପୁରୀ'ରେ ସକାଳୁ ଗୋଟିଏ ବସ୍ ଯାତ୍ରା ମାଧ୍ୟମରେ ଆରମ୍ଭ ହୋଇଛି। ସାରାଦିନ ବଡ଼ଦାଣ୍ଡ, ବିଭିନ୍ନ ମଠ, ମନ୍ଦିର ବୁଲି

ସେ ସଂପର୍କରେ ଚର୍ଚ୍ଚା କରୁକରୁ ଆସିଚି ନାନା ପ୍ରସଙ୍ଗ। ଖୋଲିଯାଇଚି ପ୍ରଶ୍ନର ଗଣ୍ଠି। କେଉଁଠି କେଉଁଠି ସେ ଗଣ୍ଠି ଖୋଲିବାର ଦାୟିତ୍ୱ ପଡ଼ିଚି ପାଠକଙ୍କ ପାଖରେ। ତେବେ ସେଇ ଅନାମୀ – ପୁନର୍ମୂଲ୍ୟାୟନର ଯାତ୍ରା ଗତି କରିଚି ରାତି ଏଗାରଟା ପର୍ଯ୍ୟନ୍ତ। ରାତି ଘନେଇ ଆସିବା ସହିତ ଏ ରଚନାରେ ତୀବ୍ର ହୋଇଚି ମନୁଷ୍ୟତାର ଜୟଗାନ।

ଜଗନ୍ନାଥବଲ୍ଲଭ ମଠରେ ଲୀନା, ଯୋଉ ଚରିତ୍ର ଏକ ଅପ୍ରତ୍ୟାଶିତ ଘଟଣା ପରଠୁ ଲେଖକଙ୍କ ସଙ୍ଗୀ ହୋଇଛି; ହଠାତ୍ ଇଂରାଜୀରେ ଅଧ୍ୟାତ୍ମର ସ୍ପର୍ଶ ଥିବା ଇଂରାଜୀ ଗୀତ ପଦେ ଗାଇ ନୃତ୍ୟ କଲାରୁ ମଠର ସେବକମାନେ ବାରଣ କରିଛନ୍ତି। ବିରକ୍ତ ହୋଇଛନ୍ତି। ଯେଉଁ ନିତ୍ୟ-ପ୍ରେମିକ ରାୟରାମାନନ୍ଦଙ୍କ ପାଇଁ ଗଢ଼ି ଉଠିଥିଲା ଏ ମଠ, ତାର ବର୍ତ୍ତମାନ ସେବକମାନଙ୍କ ଆଚରଣ ଦୁଃଖୀ କରିଚି ଲୀନାକୁ। ସେ କହିଚି, "ମଠ ସବୁ ଭକ୍ତ ଓ ଭଗବାନର ସଂପର୍କରେ ବ୍ୟସ୍ତ – କିନ୍ତୁ ମଣିଷର ମଣିଷ ସହ ସଂପର୍କ ବିଷୟରେ କେହିବି କିଛି କହିଲେନି।" – ମଣିଷ ସହିତ ମଣିଷର ମୈତ୍ରୀ ବନ୍ଧନରେ ବିଶ୍ୱାସ କରୁଥିଲା ଅନାମ। ସେଇ ବିଶ୍ୱାସ ପ୍ରତିଫଳିତ ହୋଇଛି ଲୀନାର କଥାରେ। ଭକ୍ତ-ଭଗବାନର ପୋଥିଗତ, ପରମ୍ପରା ନିଷ୍ଠ ଚର୍ଚ୍ଚା ଯେ ମଠର ମୂଳ ଆଦର୍ଶଠାରୁ କ୍ରମଶଃ ଦୂରେଇ ଯାଉଛି ଜଣାଇଛି 'ଧନ୍ୟସେହୁପୁରୀ'। ମାନୁଷୀକ ସଂପର୍କର ଆନ୍ତରିକ ଉନ୍ନତି, ଅନାବିଳ ମୈତ୍ରୀର ବନ୍ଧନରେ ପୃଥିବୀକୁ ସ୍ୱର୍ଗରେ ପରିଣତ କରିଦେବ, କିଏ ବୁଝୁଛି ଏକଥା? ଯେଉଁଠି ପୋଥିର ଭାଷା ବଡ଼ ହୋଇଯାଏ ଓ ବ୍ୟଞ୍ଜନା ଗୌଣ, ସେଠି କଣ ଆଉ ଆଶା କରିବେ କେହି? ସେଇଥିଲାଗି ତ ଦରକାର ଏଇ ପୁନରାବିଷ୍କାର, ଆଉ ତାର ସହଜ ଅବବୋଧ!

ମନୁଷ୍ୟତାର ସେଇ ଦାବି ମଧ୍ୟ ଆସିଚି 'ଧନ୍ୟ ସେହୁ ପୁରୀ'ର ଅନ୍ୟ ଏକ ପ୍ରସଙ୍ଗରେ। କୋରାପୁଟର ଶ୍ରୀଜଗନ୍ନାଥ ମନ୍ଦିର ନିର୍ମାଣ ପରେ ତା'ର ଉଦ୍‌ଘାଟନ, ଉଦ୍ୟୋକ୍ତାମାନେ ଗଜପତି ମହାରାଜଙ୍କ ହାତରେ କରିବାକୁ ସ୍ଥିରକରି ତାଙ୍କୁ ନିମନ୍ତ୍ରଣ କରିବାକୁ ଆସିଥିଲେ। ଗଜପତିଙ୍କ ପକ୍ଷରୁ ରାଜଗୁରୁ ଗଜପତିଙ୍କୁ ନିମନ୍ତ୍ରଣ କରିବା ଲାଗି କଣ କଣ ଆବଶ୍ୟକ, ସେଠି ପହଞ୍ଚିଲେ କଣ କଣ ଆବଶ୍ୟକ, ସେଠୁ ଫେରିଲେ କିପ୍ରକାର ବିଦାକି, ଯାଇଥିବା ଅନ୍ୟମାନଙ୍କୁ ଦିଆଯିବ ତାର ଲମ୍ବାଲମ୍ବା ଫର୍ଦ୍ଦଦେଲେ। ଜଣେ ଅନାମ ଯିଏ ସେ ନିମନ୍ତ୍ରକ ଦଳରେ ଥାଇ ନିଜ ଅନୁଭୂତି କହୁଥିଲେ, ତାଙ୍କ କଥାର ଉପସଂହାରଟି ଖୁବ୍ ଚମତ୍କାର। "ଏ ସମୁଦାୟ ଖର୍ଚ୍ଚ ନ କରି ସେଇ ପଇସାରେ ଆଦିବାସୀଙ୍କ ଉଦ୍ଦେଶ୍ୟରେ ଗୋଟେ ଦାତବ୍ୟ ଆୟୁର୍ବେଦିକ ବା ହୋମିଓପାଥିକ ଔଷଧାଳୟ ଖୋଲା ଯାଆନ୍ତା – ତା' ହେଲେ ଲୋକେ କେତେ ଉପକୃତ ହୁଅନ୍ତେ! ମୁଁ ଦେଖିଛି ଆଦିବାସୀମାନେ ଡାକ୍ତରଖାନାରେ ଜାଗା ନ ପାଇ କିପରି କୁକୁର ପରି ଗଛମୂଳେ ନ ହେଲେ ଡାକ୍ତରଖାନା ବାରଣ୍ଡାରେ ପଡ଼ିଥାଆନ୍ତି। ସେମାନଙ୍କ ପାଇଁ ଅଧିକା କିଛି ବେଡ୍ କରାଯାଇପାରିଥାନ୍ତା!" ଗୋଟିଏ ପଟେ ପରମ୍ପରାର ଦାବି ଅନ୍ୟପଟେ ପରମ୍ପରାର ନୀରବ ପ୍ରତିବାଦ ଭିତରେ ଏ ପ୍ରସଙ୍ଗ ପାଠକଙ୍କୁ ପ୍ରଶ୍ନ କରେ "ରୂପା ଥାଳିରେ ବ୍ରହ୍ମପୁରୀ ପାଟଯୋଡ଼, ୪ଟି ରୂପାଗିନାରେ ଅଗୁରୁ ଚନ୍ଦନ ଇତ୍ୟାଦି ସହ କେଇଟି ସ୍ୱର୍ଣ୍ଣମୁଦ୍ରା" ନେଇ ଗଜପତିଙ୍କୁ ନିମନ୍ତ୍ରଣ ପୁଣି "ରାଜାଙ୍କ ସହ ଯାଇଥିବା ବ୍ୟକ୍ତିବିଶେଷଙ୍କୁ ବିଦାକି ଓ

ମଠା ବା ଲୁଗା ଇତ୍ୟାଦି..." ଆଦିର ପ୍ରାସଙ୍ଗିକତା ଉପରେ। ଅନାମ ଜଣକ ମାଦଳାପାଞ୍ଜିରେ କେଉଁ ମନ୍ଦିରର ପ୍ରତିଷ୍ଠାଲାଗି କେଉଁ ଗଜପତି ଯିବାର ନିଦର୍ଶନ ତ ନାହିଁ ବୋଲି କହୁଛନ୍ତି ! ପରମ୍ପରା କାଳଗତ, ମାନୁଷିକ ଆବଶ୍ୟକତାକୁ ଚାହିଁ ଯେ ବଦଳିବା ଜରୁରୀ ଏକଥା ବୁଝିଥିଲେ ଅନାମଗଣ। ପ୍ରଥା, ଧର୍ମ, ପରମ୍ପରା, ଆଚାର, ନୀତିବ୍ୟବସ୍ଥାର ମାନବିକ ପରିବର୍ତ୍ତନ ଥିଲା ସେମାନଙ୍କର କାମ୍ୟ। ସେଇଥିଲାଗି ସେମାନଙ୍କର ଯେତକ ପ୍ରଶ୍ନ, ଯେତକ ଅନୁସନ୍ଧାନ। ଜାତିର ଆତ୍ମାବିଷ୍କାର କରିବାର ଚେଷ୍ଟାରେ ଯେଉଁ ଅମଡ଼ା ମାଡ଼ିବାର ଦୁଃସାହସ କୁମାର ମହାନ୍ତି କରିଛନ୍ତି ତାହା ଅଚିନ୍ତନୀୟ !

ତତ୍ତ୍ୱନିଷ୍ଠ ଆଲୋଚନାର ଶୁଷ୍କତା ନୁହେଁ କାହାଣୀର ରସ-ସ୍ପର୍ଶ ଭିତରେ ଏ ରଚନା ଗଦ୍ୟର ଅନୁପମ ସୌନ୍ଦର୍ଯ୍ୟକୁ ପ୍ରକାଶ କରିପାରିଛି। ଜ୍ଞାନ ଓ ବିତର୍କର ଭିଡ଼, ପରମ୍ପରା ଓ ପରୀକ୍ଷଣର ସମାବେଶ, କୌତୂହଳ ଓ ସତ୍ୟାନୁସନ୍ଧାନର ମୀମାଂସା ଭିତରେ 'ଧନ୍ୟ ସେହୁ ପୁରୀ' ହୋଇପାରିଛି ପ୍ରତିବାଦୀ ଲଳିତ ଗଦ୍ୟର ଏକ ଅନୁପମ ନିଦର୍ଶନ !

ପତ୍ରିକା-ବନ୍ଦୀ ଏ ଲେଖାକୁ ଅନାମ କବି ଶ୍ରୀ ମନୁ ଦାଶ ଆପଣା ଆଗ୍ରହ ଓ ଉଦ୍ୟମରେ ପୁସ୍ତକ ରୂପ ଦେଇଛନ୍ତି। ତାଙ୍କର ଉଦ୍ୟମ ଅଭିନନ୍ଦନୀୟ। ଅନାମ-ମୂର୍ଦ୍ଧନ୍ୟଙ୍କ ସାଂସ୍କୃତିକ ଦୃଷ୍ଟିକୁ ପାଠକ ଏ ବହିରୁ ତଉଲିବାକୁ ସୁଯୋଗ ପାଇବେ। କବିଭାବେ ପରିଚିତ କୁମାର ମହାନ୍ତିଙ୍କ ଗଦ୍ୟକାର-ରୂପ ଏକଦା 'ନବରବି' ମାଧ୍ୟମରେ ପାଠକ ଜାଣିଥିଲେ। ଏ ପୁସ୍ତକ ଦ୍ୱାରା ତାଙ୍କର ସେ ରୂପ ହେବ ପୁଣିଥରେ ପରିଚିତ। କୁମାର ମହାନ୍ତିଙ୍କ ଏ ଦ୍ୱିଜତ୍ୱ ପାଇଁ 'ଧଉଳି ବୁକ୍‌ସ'କୁ ଧନ୍ୟବାଦ।

———



# ଅନାମ ଏକତ୍ର

କବିତା

ସମ୍ପାଦନା

ମନୁ ଦାଶ

www.dhaulibooks.com



# ଅନାମ କାବ୍ୟ ଆନ୍ଦୋଳନ

ବୃତ୍ତାନ୍ତ । ବିବେଚନା । ସୃଷ୍ଟି । ଆଳାପ

ସଂପାଦନା

## ମନୁ ଦାଶ



www.dhaulibooks.com

‘ଅନାମ କାବ୍ୟ ଆନ୍ଦୋଳନ’ରୁ ନିଜ ସାହିତ୍ୟିକ ଯାତ୍ରା ଆରମ୍ଭ କରିଥିବା ମନୁ ଦାଶ (୧୯୫୬) ଜଣେ ଦ୍ୱି-ଭାଷିକ (ଓଡ଼ିଆ ଓ ଇଂରାଜୀ) କବି, ଅନୁବାଦକ, ସଂପାଦକ, ସାଂସ୍କୃତିକ ସଂଗଠକ ଓ ପ୍ରକାଶକ। ଶ୍ରୀ ଦାଶଙ୍କ କବିତା ମାଲାୟଲାମ୍, କନ୍ନଡ଼, ଆସାମି, ଉର୍ଦ୍ଦୁ, ହିନ୍ଦୀ, ଗୁଜରାତି ଆଦି ଭାରତୀୟ ଭାଷା ଓ ରୁଷିଆ, ସ୍ଲୋଭିନି, ଉଜ୍‌ବେକ ଆଦି ଭାଷାରେ ଅନୁଦିତ, ପ୍ରକାଶିତ ଓ ପ୍ରଶଂସିତ ହୋଇଛି।

ସଂପ୍ରତି ଲେଖକ ଭୁବନେଶ୍ୱରରେ ସ୍ୱପ୍ନ ଦେଖି ଦେଖି ଏକାନ୍ତରେ କାଳାତିପାତ କରୁଛନ୍ତି।

www.dhaulibooks.com

ISBN 978-93-89382-37-2




₹ 295.

